NEHRU
BAL PUSTAKALAYA

ନେହେରୁ ବାଲ ପୁସ୍ତକାଳୟ

# କେତୋଟି ଯୁଗାନ୍ତକାରୀ ଉଦ୍ଭାବନ

ଭାଗ 2



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନେହେରୁ ବାଲ ପୁସ୍ତକାଳୟ—23

# କେତୋଟି ଯୁଗାନ୍ତକାରୀ ଉଦ୍ଭାବନ

( ଦ୍ୱିତୀୟ ଖଣ୍ଡ )

ମିର୍ ନଜାବତ୍ ଅଲୀ

ଅଙ୍କନ : ଅହ୍ମଦ୍

ଅନୁବାଦ : ଲମ୍ବୋଦର ପ୍ରସାଦ ସିଂହ



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନୂଆ ଦିଲ୍ଲୀ

1974 ( ଶକାବ୍ଦ 1896 )

First Edition 1974 (*Saka* 1896)
Second Edition 1983 (*Saka* 1905)






INVENTIONS THAT CHANGED THE WORLD
Part 2 (Oriya)

Published by Director, National Book Trust, India, A-5 Green Park, New Delhi-110016 and printed at Himgiri Printers, D-8, Site 4, Sahibabad (U.P.).





## ଡାଇନାମୋ

ଯେଉଁ ଦେଶରେ ବିଦ୍ୟୁତ୍ ଶକ୍ତି ଅଳ୍ପ ମୂଲ୍ୟରେ ଓ ପ୍ରଚୁର ପରିମାଣରେ ମିଳେ, ତାହା ଦେଶ ପ୍ରତି ଏକ ଆଶୀର୍ବାଦ ବୋଲି ଭାବିବାକୁ ହେବ । କାରଣ ବିଦ୍ୟୁତ୍ ଶକ୍ତି ଆମକୁ ଘରେ ଆଲୋକ ଓ ଉତ୍ତାପ ଯୋଗାଇବା ସଙ୍ଗେ ସଙ୍ଗେ ଇଲେକ୍ଟ୍ରିକ୍ ଇସ୍ତ୍ରୀ, ଇଲେକ୍ଟ୍ରିକ୍ ହିଟର, ଇଲେକ୍ଟ୍ରିକ୍ ଚୁଲୀ, ଇଲେକ୍ଟ୍ରିକ୍ ଘଣ୍ଟି, ତାପ-ନିୟନ୍ତ୍ରଣକାରୀ ଯନ୍ତ୍ର, ଘରସଫେଇ ଯନ୍ତ୍ର, ଲୁଗାଧୁଆ ମେସିନ୍ ଓ କ୍ଷୌରଯନ୍ତ୍ର ଇତ୍ୟାଦି ଚଳାଇବାରେ ସାହାଯ୍ୟ କରେ । ଏହି ଗୁଡ଼ିକର ବ୍ୟବହାର ଫଳରେହିଁ ଆଜି ଜୀବନ ବହୁତ ସହଜ ଓ ସୁଖପ୍ରଦ ହୋଇ ପାରିଛି ।



ବିଜୁଳିଶକ୍ତିରେ ବି ରେଳଗାଡ଼ି, ଟ୍ରାମ୍ ଓ କଳକାରଖାନା ଚାଲିଯାଏ । ପୁଣି ଟେଲିଗ୍ରାଫ, ଟେଲିଫୋନ, ରେଡ଼ିଓ ଓ ଟେଲିଭିଜନ ଇତ୍ୟାଦି ଏହା ସାହାଯ୍ୟରେ କାମ କରନ୍ତି । ଆଜିକାଲି ବିଦ୍ୟୁତ୍‌ଶକ୍ତିର ଏତେ ବ୍ୟାପକ ବ୍ୟବହାର ଯେ ଏହାର ଉଦ୍ଭାବନ ପୂର୍ବରୁ ଆମେ କିପରି ଚାଲୁଥିଲୁ, ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ତଥାପି ଦେଢ଼ ଶହ ବର୍ଷ ପୂର୍ବରୁ ଲୋକେ ଏହା ବ୍ୟତୀତ ହିଁ ଚାଲୁଥିଲେ । ସେ ସମୟରେ ଏହାର ଉପଯୋଗିତା ଯେ ଜଣାନଥିଲା ତାହା ନୁହେଁ, କିନ୍ତୁ ଏହାର ଉତ୍ପାଦନ କଷ୍ଟକର ଓ ବ୍ୟୟସାପେକ୍ଷ ଥିଲା । କେବଳ ବୈଜ୍ଞାନିକମାନେ ପରୀକ୍ଷାପାଇଁ ଅଳ୍ପ

ପରିମାଣରେ ଏହା ଉତ୍ପାଦନ କରୁଥିଲେ । କିନ୍ତୁ ଡାଯନାମୋର ଉଦ୍ଭାବନ ଫଳରେ ସାଧାରଣ ଲୋକ ପାଖରେ ବିଜୁଳିଶକ୍ତି ପହଞ୍ଚି ପାରିଲା ।

ବିଜୁଳିଶକ୍ତି କଥା ବହୁତ ଆଗରୁ ଜଣାଥିଲା । ଖ୍ରୀଷ୍ଟପୂର୍ବ ଛଅ ଶହ ବର୍ଷ ତଳେ ଜଣେ ଗ୍ରୀକ୍ ଦାର୍ଶନିକ ଉଦ୍ଭାବନ କରିଥିଲେ ଯେ ଖଣ୍ଡେ ଅମ୍ବର (amber) କୁ ରେଶମ କନାରେ ଘଷିଲେ ଏହା କାଗଜ, ଲୁଗା ବା ପର ଇତ୍ୟାଦି ହାଲୁକା ପଦାର୍ଥଗୁଡ଼ିକୁ ନିଜ ଆଡ଼କୁ ଟାଣି ନେଇପାରୁଛି । କିନ୍ତୁ ୧୬୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏଥିରୁ ବିଶେଷ କିଛି ଶିକ୍ଷା ମିଳି ନଥିଲା । ଏହି ସମୟରେ ଉଇଲିୟମ୍ ଗିଲବର୍ଟ ବିଦ୍ୟୁତ୍‌ଶକ୍ତି ଉପରେ ଗବେଷଣା କରି ଅନେକ ପରୀକ୍ଷା ନିରୀକ୍ଷା କରିଥିଲେ । ସେ ଦେଖିଲେ ଅମ୍ବର ଛଡ଼ା ଗନ୍ଧକ ବା କାଚ ପ୍ରଭୃତିକୁ ରେଶମ ବା ଫ୍ଲାନେଲ କନାରେ ଘଷିଲେ ସେଗୁଡ଼ିକ ଛୋଟ ଛୋଟ କାଗଜଖଣ୍ଡକୁ ଟାଣିନେଇ ପାରୁଛନ୍ତି । ଅମ୍ବରକୁ ଗ୍ରୀକ୍ ଭାଷାରେ ଇଲେକ୍‌ଟ୍ରନ୍ କୁହାଯାଏ । ସେହିଥିରୁ ସେ "ଇଲେକ୍‌ଟ୍ରିସିଟି" ଶବ୍ଦଟି ବାହାର କରି ପ୍ରଥମେ ବ୍ୟବହାର କରିଥିଲେ । ଏହା ହେଉଛି ଆଧୁନିକ ବୈଦ୍ୟୁତିକ ବିଜ୍ଞାନର ଆରମ୍ଭ, ଯାହାକି ପୃଥିବୀକୁ ପୂରା ବଦଳାଇ ଦେଇ ପାରିଛି ।

ଗ୍ରୀସ୍‌ର ଲୋକମାନେ ବିଜୁଳିଶକ୍ତି ବିଷୟରେ ଜାଣିବା ପୂର୍ବରୁ ଗୋଟିଏ ପ୍ରକାର ପଥରର ଆବିଷ୍କାର କରିଥିଲେ । ଏହି ପଥର ଛୋଟ ଛୋଟ ଲୁହାଖଣ୍ଡକୁ ନିଜ ଆଡ଼କୁ ଟାଣିନେଇ ପାରୁଥିଲା । ଏହାର ରସାୟନିକ ନାମ୍ ହେଉଛି ଆଇରନ୍ (iron oxide) ଏହା ଗ୍ରୀସ, ଉତ୍ତର ଆମେରିକା ଓ ସ୍ୱୀଡେନ୍‌ରେ ମିଳେ । କିନ୍ତୁ ପ୍ରାଚୀନ ଗ୍ରୀସ୍‌ର ମାଗ୍ନେସିଆ ନାମକ ଏକ ଜିଲ୍ଲାରେ ପ୍ରଥମେ ଏହା ବହୁତ ପରିମାଣରେ ମିଳିଥିଲା । ତେଣୁ ଏହାକୁ "ମାଗ୍ନେସିଆ ପଥର" କୁହାଗଲା । ପରେ ଏହି ଶବ୍ଦରୁ ମାଗ୍‌ନେଟ୍ ଶବ୍ଦର ଉତ୍ପତ୍ତି ହେଲା । ମାଗ୍‌ନେଟ୍‌କୁ ଆମେ ଚୁମ୍ବକ ବୋଲି କହୁ ।

ଆଜିକାଲି ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ କୃତ୍ରିମ ଉପାୟରେ ଚୁମ୍ବକ ତିଆରି କରଯାଇ ପାରୁଛି । ଏହି ଚୁମ୍ବକ ଦୁଇ ଆକୃତିର । ପ୍ରଥମଟି ଦଣ୍ଡ ଆକାରର । ଏହାର




ନାମ ଦଣ୍ଡଚୁମ୍ବକ ବା ବାର୍ ମାଗ୍ନେଟ୍ । ଅନ୍ୟଟିର ଆକାର ଇଂରାଜି ଅକ୍ଷର ୟୁ (U) ପରି । ଏହା ଠିକ୍ ଘୋଡ଼ାପାଦ ପରି ହୋଇଥିବାରୁ ଏହାକୁ କୁହାଯାଏ ହର୍ସ ସୁ ମାଗ୍ନେଟ୍ (Horse Shoe Magnet) । ଏହି ଚୁମ୍ବକଗୁଡ଼ିକର ବହୁତ ଉପଯୋଗିତା ଅଛି । ବିଶେଷକରି ଦଣ୍ଡଚୁମ୍ବକ ନାବିକମାନଙ୍କର ବହୁତ ଉପକାରରେ ଆସିଥାଏ ।

ସମୟକ୍ରମେ ଜଣାପଡ଼ିଲା ଯେ ଯଦି ଗୋଟିଏ ଦଣ୍ଡଚୁମ୍ବକର ମଧ୍ୟଭାଗକୁ ଖଣ୍ଡେ ସୂତାରେ ବାନ୍ଧି ଝୁଲାଇ ଦିଆଯାଏ ତେବେ ଏହା ଏକ ନିର୍ଦ୍ଦିଷ୍ଟ ଦିଗରେ ସ୍ଥିର ହୋଇ ରହିବ ।

ଏହା ହେଉଛି ଉତ୍ତର-ଦକ୍ଷିଣ ଦିଗ । ଏହି ଆବିଷ୍କାରର ପୂର୍ବରୁ ମହାସମୁଦ୍ରରେ ଯାତାୟାତ କରୁଥିବା ନାବିକମାନଙ୍କର ଦିଗ ନିର୍ଣ୍ଣୟ କରିବାର କୌଣସି ଉପାୟ ନଥିଲା । ଚାରିପାଖରେ ନୀଳ ଜଳରାଶି ଏକା ପରି ଦେଖାଯାଉଥିଲା । କେବଳ ସୂର୍ଯ୍ୟ, ଚନ୍ଦ୍ର ଓ ତାରାଗୁଡ଼ିକୁ ଲକ୍ଷ୍ୟକରି ସେମାନେ ସେମାନଙ୍କର ଯାତ୍ରାର ଦିଗ ନିର୍ଣ୍ଣୟ କରୁଥିଲେ । କିନ୍ତୁ ଆକାଶ ମେଘାଚ୍ଛନ୍ନ ରହିଲେ ସେମାନେ ଅସୁବିଧାର ସମ୍ମୁଖୀନ



ଚୁମ୍ବକ ଦଣ୍ଡକୁ ମୁକ୍ତ ଭାବରେ ଝୁଲାଇ ରଖିଲେ ତାହା ସର୍ବଦା ଉତ୍ତର-ଦକ୍ଷିଣ ହୋଇ ରହେ



କମ୍ପାସ୍

ହେଉଥିଲେ । ତେଣୁ ଯେତେବେଳେ ଜଣାଗଲା ଯେ ଦଣ୍ଡଚୁମ୍ବକ ସବୁବେଳେ ଉତ୍ତର-ଦକ୍ଷିଣ ଦିଗକୁ ଦର୍ଶାଇଥାଏ ନାବିକମାନେ ଖଣ୍ଡେ ଛୋଟ ଦଣ୍ଡଚୁମ୍ବକକୁ ଏକ କମ୍ପାସରେ ବ୍ୟବହାର କରି ଯେକୌଣସି ସମୟରେ ଜାହାଜର ଗତିର ଦିଗ ନିର୍ଣ୍ଣୟ କରିପାରିଲେ ।

ଷୋଡ଼ଶ ଶତାବ୍ଦୀରେ ୟୁରୋପରେ ବିଜ୍ଞାନର ଜନ୍ମ ହେଲା । ସେହି ସମୟଠାରୁ ବୈଜ୍ଞାନିକମାନେ ଗିଲବର୍ଟଙ୍କ କାମରେ ଉତ୍ସାହିତ ହୋଇ ବିଦ୍ୟୁତ୍‌ଶକ୍ତି ଓ ଚୁମ୍ବକୀୟ ଶକ୍ତି ବିଷୟରେ ଅଧିକ ଜାଣିବା ପାଇଁ ଚାହିଁଲେ । ସେମାନଙ୍କ ଚେଷ୍ଟାର ଫଳସ୍ୱରୂପ ଲିଡ଼େନ୍ ଜାର୍ (Leyden jar) ଓ ଉଇମସର୍ଷ୍ଟ ମେସିନ୍ (Wimshurst Machine) ତିଆରି ହେଲା । ପ୍ରଥମଟି ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ କରିପାରିଲା ଓ ଦ୍ୱିତୀୟଟିରେ ବିଦ୍ୟୁତ୍ ଶକ୍ତିକୁ ଠୁଳକରି ରଖାଯାଇ ପାରିଲା ।

ଦୁଇଟି ଜିନିଷ ଘଷିବାଦ୍ୱାରା ଯେଉଁ ବିଦ୍ୟୁତ୍‌ଶକ୍ତି ସୃଷ୍ଟି ହେଲା ତାକୁ କୁହାଗଲା ସ୍ଥିର ବିଦ୍ୟୁତ୍ ଶକ୍ତି (Frictional electricity) ଏହି ଢଙ୍ଗରେ ବିଦ୍ୟୁତ୍‌ଶକ୍ତି ସୃଷ୍ଟିକରି ତାକୁ ବ୍ୟବହାରରେ ଲଗାଇବା ବଡ଼ ଅସୁବିଧାଜନକ ଥିଲା । ତେଣୁ ଏହା ସେପରି ଉପଯୋଗୀ ହୋଇ ପାରିଲା ନାହିଁ । ପ୍ରଚୁର ପରିମାଣର ସ୍ଥିର ବିଦ୍ୟୁତ୍‌ଶକ୍ତି ପାଖାପାଖି ଦୁଇଟି ଯନ୍ତ୍ରରେ ସଂଗ୍ରହ କରି ରଖିଲେ ଆକର୍ଷଣ ଫଳରେ ଗୋଟିକରୁ ବିଦ୍ୟୁତ୍‌ଶକ୍ତି ଅନ୍ୟଟିକୁ ଡେଇଁ ଯାଉଥିଲା ଓ ବିଦ୍ୟୁତ୍ ଝଲକଟିଏ ସୃଷ୍ଟି ହେଉଥିଲା । ଏହି ସ୍ଥିର ବିଦ୍ୟୁତ୍‌ଶକ୍ତିକୁ ଗୋଟିଏ ସ୍ଥାନରେ ଗଚ୍ଛିତ ରଖାଯାଇ ପାରିଲା କିନ୍ତୁ ଏହାକୁ ଗତିଶୀଳ କରାଇ କୌଣସି କାମରେ ଲଗାଯାଇ ପାରିଲା ନାହିଁ ।

ତା ପରେ ଆସିଲେ ବେଞ୍ଜାମିନ ଫ୍ରାଙ୍କ୍‌ଲିନ୍ । ୧୭୫୨ ଖ୍ରୀଷ୍ଟାବ୍ଦରେ ତାଙ୍କ ଆବିଷ୍କୃତ ତଥ୍ୟ ବୋଧହୁଏ ସ୍ଥିରବିଦ୍ୟୁତ୍ ଉପରେ ହୋଇଥିବା ପରୀକ୍ଷାଗୁଡ଼ିକରୁ ଅବଗତ ଫଳାଫଳ ମଧ୍ୟରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସେ ସର୍ବପ୍ରଥମେ ଦେଖାଇଲେ ଯେ ବିଦ୍ୟୁତ୍ ସ୍ଫୁରଣ ଓ (ମେଘାଚ୍ଛନ୍ନ ଆକାଶରେ ବିଜୁଳି) ଝଲକ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।



ଲିଡେନ୍ ଜାର୍



ତେଣୁ ବର୍ତ୍ତମାନ ସମସ୍ୟା ହେଲା କିପରି ଏକ ଚିରପ୍ରବହମାନ ବିଦ୍ୟୁତ୍‌ସ୍ରୋତ ମିଳିପାରିବ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଡାଯନାମୋର ଆବିଷ୍କାର ଫଳରେ ଏହା ସମ୍ଭବ ହୋଇପାରିଲା । ଏହି ସମୟଠାରୁ ବିଦ୍ୟୁତ୍-ବିଜ୍ଞାନ ଇତିହାସରେ ଏକ ନୂତନ ଅଧ୍ୟାୟର ସୃଷ୍ଟିହେଲା ।

୧୭୮୯ ଖ୍ରୀଷ୍ଟାବ୍ଦର ଦିନକର ଘଟଣା । ଲୁଇ ଗାଲଭନି ନାମକ ଜଣେ ଇଟାଲୀୟ ଶରୀର-ବିଜ୍ଞାନ ପ୍ରଫେସର ଗୋଟିଏ ବେଙ୍ଗର ଦେହକୁ ବ୍ୟବଛେଦ କରି ଟେବୁଲ ଉପରେ ପରୀକ୍ଷା କରୁଥାନ୍ତି । ସେ ଦେଖିଲେ ଯେ ଗୋଟେ ଲୁହାଯନ୍ତ୍ରରେ ବେଙ୍ଗର କୌଣସି ସ୍ନାୟୁକୁ ଛୁଇଁ ଦେଲେ ବେଙ୍ଗର ଗୋଡ଼ ଖୁବ୍ ଜୋରରେ ଛିଞ୍ଚାଡ଼ି ହେଉଛି । ଦୁଇଖଣ୍ଡ ଲୁହାପାତିଆରୁ ତମ୍ବା ଚାମୁଚା ସାହାଯ୍ୟରେ ବେଙ୍ଗର ଦେହକୁ ଛୁଆଇଲେ ଅନୁରୂପ ଲକ୍ଷଣ ଦେଖାଗଲା । ଗାଲଭନି ଭାବିଲେ ବୋଧହୁଏ ପ୍ରାଣୀମାନଙ୍କ ଦେହରେ ବିଦ୍ୟୁତ୍‌ଶକ୍ତି ଅଛି ଓ ସେଥିଲାଗି ଦେହର କୌଣସି ଅଂଶକୁ ଦସ୍ତାପାତିଆରେ ଛୁଇଁଲେ ଏହି ପ୍ରକାର ସ୍ପନ୍ଦନ ଅନୁଭୂତ ହେବ । ପ୍ରକୃତରେ ବି ଖଣ୍ଡେ ଦସ୍ତାଦଣ୍ଡ ସହିତ ସଂଲଗ୍ନ ତମ୍ବାପାତିଆରେ ବେଙ୍ଗର ଦେହକୁ ଛୁଇଁଲେ ଏହି ପ୍ରକାର ସ୍ପନ୍ଦନ ହେଉଥିବାର

ଦେଖାଗଲା । ଏହାକୁ ପ୍ରାଣୀଜ ବିଦ୍ୟୁତ୍ ବା ଗାଲଭନିଜମ୍ କୁହାଗଲା । କିନ୍ତୁ ଆଲ୍‌ସାଣ୍ଡ୍ରୋ ଭୋଲ୍‌ଟା ନାମକ ଆଉଜଣେ ଇଟାଲୀୟ ଅଧ୍ୟାପକ ଏହି ତତ୍ତ୍ୱ ସହିତ ଏକମତ ହେଲେନାହିଁ । ସେ କହିଲେ ପ୍ରାଣୀର ଦେହରେ ବିଦ୍ୟୁତଶକ୍ତି ନାହିଁ । ବରଂ ଦୁଇଟି ଭିନ୍ନ ରକମର ଧାତୁର ସ୍ପର୍ଶ ମାଂସର ଆର୍ଦ୍ରତା ସାହାଯ୍ୟରେ ବିଦ୍ୟୁତ୍‌ଶକ୍ତି ଉତ୍ପନ୍ନ ହେଉଛି । ସେ କେତୋଟି ଦସ୍ତା ଓ ତମ୍ବାର ସରୁ ଥାଳିଆ ଆକୃତିର ପ୍ଲେଟ୍ ନେଲେ । ଦସ୍ତା ତମ୍ବା–ଏହି କ୍ରମରେ ପ୍ଲେଟ୍ ଗୁଡ଼ିକ ଉପରକୁ ଉପର ରଖି ପ୍ରତି ଦୁଇଟି ପ୍ଲେଟ୍ ମଝିରେ ଲୁଣପାଣିରେ ତିନ୍ତା ହୋଇଥିବା ଖଣ୍ଡେ ଖଣ୍ଡେ ପଟି ରଖି ସେ ଏକ ବଡ଼ ଗଦା କଲେ । ଏହି ପ୍ଲେଟ୍ ଗଦାର ସବାତଳେ ଦସ୍ତାର ଓ ସବା ଉପରେ ତମ୍ବାର ଥାଳିଆ ରଖିଲେ । ତାପରେ ଏହି ଦୁଇ ମୁଣ୍ଡକୁ ତାର ସାହାଯ୍ୟରେ ସଂଯୁକ୍ତ କଲେ । ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ ହେବାର ଦେଖାଗଲା, ଏହାକୁ ଭୋଲଟାଇକ୍ ବିଦ୍ୟୁତ୍ କୋଷ କୁହାଗଲା । ଏହିପରି ଭାବରେ ପ୍ରଥମ ଇଲେକ୍‌ଟ୍ରିକ୍ ବ୍ୟାଟେରୀ ତିଆରି ହୋଇଥିଲା । ତାପରେ ଗୋଟିଏ ପରେ ଗୋଟିଏ ଉନ୍ନତ ଧରଣ ବ୍ୟାଟେରୀ ତିଆରି ହେବାରେ ଲାଗିଲା । ଆଜିବି ଆମେ ଟେଲିଫୋନ୍ ବା ଟ୍ରାନ୍‌ଜିଷ୍ଟର ପାଇଁ ଯେଉଁଠି ସ୍ୱଳ୍ପ ପରିମାଣରେ ନିର୍ଦ୍ଦିଷ୍ଟ ବିଜୁଳିସ୍ରୋତ ଦରକାର କରୁ ସେଠାରେ ବ୍ୟାଟେରୀ ବ୍ୟବହାର କରୁଅଛୁଁ । ଏହି-ପ୍ରକାର ବିଦ୍ୟୁତ୍ କୋଷକୁ ପ୍ରାଥମିକ ବିଦ୍ୟୁତ୍ କୋଷ କୁହାଯାଏ । ଦ୍ୱିତୀୟକ ବିଦ୍ୟୁତ୍ କୋଷ ଗୁଡ଼ିକ ବିଦ୍ୟୁତ୍‌ଶକ୍ତି ଠୁଳକରି ରଖି ଏକ ଅପରିବର୍ତ୍ତୀ ବିଦ୍ୟୁତ୍‌ସ୍ରୋତ ଯୋଗାଇଥାନ୍ତି । ଏଗୁଡ଼ିକୁ ସାଧାରଣତଃ ମଟର କାର୍ ବା ବସ୍‌ରେ ବ୍ୟବହାର କରାଯାଏ ।

କିନ୍ତୁ ବ୍ୟାଟେରୀରୁ ବିଦ୍ୟୁତ୍‌ସ୍ରୋତ ଅଳ୍ପ ସମୟ ପାଇଁ ମିଳିଥାଏ ଓ ବ୍ୟୟସାପେକ୍ଷ ମଧ୍ୟ । ତେଣୁ କିପରି ଶସ୍ତା ଓ ପ୍ରଚୁର ପରିମାଣରେ ବିଦ୍ୟୁତ୍‌ସ୍ରୋତ ମିଳିପାରିବ, ତାହା ଚିନ୍ତାର ବିଷୟ ହୋଇପଡ଼ିଲା । ଏଥିପାଇଁ ଅନବରତ ଚେଷ୍ଟା ଚାଲିଲା ।

୧୮୨୦ ଖ୍ରୀଷ୍ଟାବ୍ଦରେ ଡେନ୍‌ମାର୍କରେ ହାନ୍‌ସ ଓର୍‌ଷ୍ଟେଡ୍ ନାମକ ଜଣେ ପଦାର୍ଥବିଜ୍ଞାନୀ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର କରିଥିଲେ । ଥରେ ସେ ଛାତ୍ରମାନଙ୍କୁ ଏକ ପରୀକ୍ଷା କରି ଦେଖାଉଥାଆନ୍ତି । ଟେବୁଲ୍ ଉପରେ ତାଙ୍କ ଅଜାଣତରେ ଗୋଟିଏ କମ୍ପାସ ଥୁଆ ହୋଇଥାଏ । ଓର୍‌ଷ୍ଟେଡ୍ ଦେଖିଲେ




ଓର୍ଷ୍ଟେଡ୍‌, ଉଦ୍ଭାବନ କଲେ ଯେ ବିଦ୍ୟୁତ୍‌ଶକ୍ତି ଓ ଚୁମ୍ବକଶକ୍ତି ପରସ୍ପର ସମ୍ପୃକ୍ତ

ଯେତେବେଳେ କମ୍ପାସ ଉପରେ ଥିବା ଏକ ତାର ଦେଇ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହେଉଛି ସେ ସମୟରେ କମ୍ପାସ୍‌ର କଣ୍ଟାଟି ବୁଲିଯାଉଛି । ପୁଣି ବିଦ୍ୟୁତ୍‌ସ୍ରୋତର ଦିଗ ବଦଳିବା ସହିତ କଣ୍ଟାଟିର ବୁଲିବାର ଦିଗ ମଧ୍ୟ ବଦଳୁଛି । ବିଦ୍ୟୁତସ୍ରୋତ ବନ୍ଦହୋଇଗଲେ କଣ୍ଟା ସ୍ଥିର ରହୁଛି ।

ଓରଷ୍ଟେଡ୍ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଜାଣିଥିଲେ କେବଳ ଚୁମ୍ବକହିଁ କମ୍ପାସର କଣ୍ଟାକୁ ଏହିପରି ବୁଲାଇପାରେ । ସେ ବାରମ୍ବାର ପରୀକ୍ଷାଟି କଲେ ଓ ସବୁବେଳେ ଏକା କଥା ଲକ୍ଷ୍ୟ କଲେ । ତାପରେ ସେ ବାଧ୍ୟ ହୋଇ ବିଶ୍ୱାସ କଲେ ଯେ ବୋଧହୁଏ ଗୋଟିଏ ତାରରେ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହେଲେ ତାରଟି ଚୁମ୍ବକ ପରି ବ୍ୟବହାର କରେ । ଏଥିରୁ ଜଣାପଡ଼ିଲା ଯେ ବିଦ୍ୟୁତ୍ ଓ ଚୁମ୍ବକୀୟ ଶକ୍ତି ମଧ୍ୟରେ ଘନିଷ୍ଠ ସଂପର୍କ ରହିଛି । ଏହି ଆବିଷ୍କାର ବିଜ୍ଞାନଜଗତରେ ଚହଳ ପକାଇଦେଲା ।

ପୂର୍ବୋକ୍ତ ଆବିଷ୍କାର ପରେ ପରେ ବିଦ୍ୟୁତ୍ ଚୁମ୍ବକର ଉଦ୍ଭାବନ ହେଲା । ଖଣ୍ଡେ ଲୁହାଦଣ୍ଡର ଚାରିପଟେ, ଲୁହାକୁ ନ ଛୁଇଁଲା ଭଳି ତାରର ଏକ କୁଣ୍ଡଳୀ ଦେଇ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହେଲେ ଲୁହାଟି ଚୁମ୍ବକ ହୋଇଯାଏ । ଲୁହା ଯଦି ନରମ ହୋଇଥାଏ ତେବେ ବିଦ୍ୟୁତ୍‌ସ୍ରୋତ ବନ୍ଦହେବା ମାତ୍ରେ ଏହାର ଚୁମ୍ବକତ୍ୱ ନଷ୍ଟ ହୋଇଯାଏ । ଏହି ପ୍ରକାର ଚୁମ୍ବକକୁ ବିଦ୍ୟୁତ୍ ଚୁମ୍ବକ କୁହାଯାଏ । ୧୮୨୧ରେ ଆମେରିକାର ବୈଜ୍ଞାନିକ ଯୋସେଫ୍ ହେନେରୀ ବ୍ୟାଟେରୀ ସାହାଯ୍ୟରେ ଏକ ବିଦ୍ୟୁତ୍ ଚୁମ୍ବକ ତିଆରି କରିଥିଲେ । ଏହା ଏକ ଟନ୍ ଓଜନର ଲୁହା ଉଠାଇପାରୁଥିଲା ।

ତାପରେ ଆସିଲା ଡାଯନାମୋର ଉଦ୍ଭାବନ । ଉଦ୍ଭାବକଙ୍କ ନାମ ମାଇକେଲ୍ ଫାରଡ଼େ । ମାଇକେଲ ଫାରଡ଼େ ଥିଲେ ଜଣେ ଗରିବ କମାରର ପୁଅ । ସେ ପୁଣି ଦିନେ ହେଲେ ପୃଥିବୀର ଜଣେ ଶ୍ରେଷ୍ଠ ବୈଜ୍ଞାନିକ ଓ ଲଣ୍ଡନ ରୟାଲ୍ ସୋସାଇଟିର ପ୍ରେସିଡେଣ୍ଟ ! ଫାରଡ଼େ ତେର ବର୍ଷ ବୟସରେ ଗୋଟେ ବହି ବାନ୍ଧିବା ଦୋକାନରେ କାମ ଆରମ୍ଭ କରିଥିଲେ । କିନ୍ତୁ ସେ କେବଳ ବହି ଉପରେ ମଲାଟ ମଡ଼ାଇ ସନ୍ତୁଷ୍ଟ ହୋଇ ନ ଥିଲେ । ବହି ଭିତରର କଥାବସ୍ତୁ ଜାଣିବାପାଇଁ ଥିଲା ତାଙ୍କର ଅତ୍ୟନ୍ତ ଆଗ୍ରହ ।




ତାଙ୍କ ପାଖକୁ ଯେତେ ବହି ଆସିଥିଲା ସେ ସବୁ ପଢ଼ିଥିଲେ । କିନ୍ତୁ ତାଙ୍କର ବିଜ୍ଞାନ ବହି ସବୁପାଇଁ ବହୁତ ଆଗ୍ରହ ଥିଲା ।

ସୌଭାଗ୍ୟକୁ ଫାରାଡ଼େଙ୍କ ମାଲିକ ଜଣେ ଦୟାଳୁ ଲୋକ ଥିଲେ । ସେ ଫାରାଡ଼େଙ୍କୁ ମନ ଇଚ୍ଛା ପଢ଼ିବା ପାଇଁ ସୁଯୋଗ ଦେଇଥିଲେ ।

ଦିନେ ଜଣେ ଗ୍ରାହକ ଲଣ୍ଡନ ରୟାଲ୍ ସୋସାଇଟିର ଖ୍ୟାତନାମା ବୈଜ୍ଞାନିକ ହମ୍ଫ୍ରି ଡାଭିଙ୍କ ଗୋଟେ ବିଜ୍ଞାନ ସମ୍ବନ୍ଧୀୟ ବକ୍ତୃତା ଶୁଣିବାପାଇଁ ଫାରାଡ଼େଙ୍କୁ ଖଣ୍ଡେ ଟିକେଟ୍ ଦେଇଥିଲେ । ଫାରଡ଼େ ଅତ୍ୟନ୍ତ ମନୋଯୋଗ ସହକାରେ ବକ୍ତୃତାଟି ଶୁଣିଲେ । ଯାହା ଶୁଣିଲେ ତାର ସଂକ୍ଷିପ୍ତ ଟିପ୍‌ପଣୀ କଲେ । କିଛିଦିନ ପରେ ଏହି ଟିପ୍‌ପଣୀକୁ ବନ୍ଧାଇ ଡାଭିଙ୍କ ନିକଟକୁ ପଠାଇ ତାଙ୍କ ପରୀକ୍ଷାଗାରରେ କୌଣସି ଏକ ଚାକିରୀପାଇଁ ନିବେଦନ କଲେ । ସେ ମଧ୍ୟ ପରିଷ୍କାର ଭାବରେ ଲେଖିଲେ ଯେ ସେ କୌଣସି କାମ ଯେତେ ଛୋଟ ହେଲେ ମଧ୍ୟ କରିବାକୁ କୁଣ୍ଠାବୋଧ କରିବେ ନାହିଁ ।

ଡାଭି ଫାରଡେଙ୍କୁ ଡକାଇଲେ । ଫାରଡେଙ୍କର ପ୍ରବଳ ଇଚ୍ଛା ଥିବାର ଦେଖି ସେ ତାଙ୍କୁ ବୋତଲ ସଫା କରିବା ଓ ପରୀକ୍ଷାଗାର ପରିଷ୍କାର କରିବା କାମଦେଲେ ।

ପରୀକ୍ଷାଗାରରେ ଯେଉଁସବୁ ପରୀକ୍ଷା ହୁଏ ଫାରଡ଼େ ସେଗୁଡ଼ିକୁ ଆଗ୍ରହର ସହିତ ଲକ୍ଷ୍ୟ କରନ୍ତି । ଧୀରେ ଧୀରେ ତାଙ୍କର ଜ୍ଞାନ ବଢ଼ିବା ପରେ ସେ ନିଜେ ମଧ୍ୟ ପରୀକ୍ଷା କରିବା ଆରମ୍ଭ କଲେ । ସେଥିରେ ମଧ୍ୟ ଖୁବ୍ କୃତକାର୍ଯ୍ୟ ହେଲେ । ବୈଜ୍ଞାନିକମାନେ ଏଣିକି ତାଙ୍କ କାମ ଉପରେ ବିଶେଷ ନଜର ଦେଲେ । ସମୟକ୍ରମେ ସେ ଜଣେ ପ୍ରଖ୍ୟାତ ବୈଜ୍ଞାନିକ ହୋଇ ବାହାରିଲେ । ତାଙ୍କୁ ରୟାଲ୍ ସୋସାଇଟିର ସଭ୍ୟରୂପେ ନିଆଗଲା ।

କୁହାଯାଏ ସାର୍ ହମ୍ଫ୍ରିଡାଭିଙ୍କୁ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଆବିଷ୍କାର କ'ଣ ବୋଲି ପଚରାଯିବାରୁ ସେ କହିଥିଲେ—ମାଇକେଲ୍ ଫାରଡ଼େ ।

ଓରଷ୍ଟେଡ୍‌ଙ୍କ ଉଦ୍ଭାବନ, ଯେ ବିଦ୍ୟୁତ୍‌ସ୍ରୋତ ଗୋଟିଏ ତାର ଦେଇ ପ୍ରବାହିତ ହେଲେ ଚୁମ୍ବକୀୟ ପ୍ରଭାବ ସୃଷ୍ଟି କରେ । ସମୟକ୍ରମେ ଫାରଡେଙ୍କ କାନରେ ପଡ଼ିଲା । ତାପରେ ସେ ନିଜକୁ ପ୍ରଶ୍ନକଲେ ଯେ ଯଦି ବିଦ୍ୟୁତ୍‌ସ୍ରୋତ ଚୁମ୍ବକୀୟ ପ୍ରଭାବ ସୃଷ୍ଟିକରିପାରୁଛି ତେବେ ଚୁମ୍ବକ ବିଦ୍ୟୁତ୍‌ସ୍ରୋତ ସୃଷ୍ଟିକରି ପାରିବ ନାହିଁ କାହିଁକି ?

ଏହି ଧାରଣା ଉପରେ ସେ କାମ ଆରମ୍ଭ କଲେ । ଯେଉଁ ତଥ୍ୟକୁ ନେଇ ସେ ପରୀକ୍ଷା ଆରମ୍ଭ କଲେ ତାହା ବୁଝିବାକୁ ଖୁବ୍ ସହଜ ।

ଖଣ୍ଡେ ସିଲିଣ୍ଡର ଆକୃତିର କାର୍ଡ଼ବୋର୍ଡ଼ ଗ୍ଭରିପଟେ ତାର-ଗୁଡ଼ାଇ [illegible] । ତାର କୁଣ୍ଡଳୀର ଦୁଇ ମୁଣ୍ଡ ଗୋଟିଏ ଗାଲ୍‌ଭନୋମିଟର ସହିତ ଯୋଡ଼ି ଦିଆଗଲା । ଗାଲ୍‌ଭନୋମିଟର ଏକ ଯନ୍ତ୍ର, ଯାହା ସାହାଯ୍ୟରେ ବିଦ୍ୟୁତ୍‌ସ୍ରୋତ ମପାଯାଏ । ତା ପରେ ଖଣ୍ଡେ ଦଣ୍ଡଚୁମ୍ବକକୁ ସିଲିଣ୍ଡର ମଝିରେ ରଖାଗଲା ।



ମାଇକେଲ୍.ଫାରଡ଼େ

ଫାରଡ଼େ ଗାଲ୍‌ଭନୋମିଟରର କଣ୍ଟାକୁ ନ ବୁଲିବାର ଦେଖି ହତାଶହୋଇ ପଡ଼ିଲେ । ଦିନେ ବିରକ୍ତ ହୋଇ ଚୁମ୍ବକକୁ ଫୋପାଡ଼ିବା ପାଇଁ ଟାଣିଆଣିଲେ । ହଠାତ୍ ଦେଖିଲେ ଯେ ଗାଲ୍‌ଭନୋମିଟର କଣ୍ଟାଟି ବୁଲିଲା । ଏହିପରି ଭାବରେ ଫାରଡ଼େ ଦେଖିଲେ ଯେ ଚୁମ୍ବକଟି ସିଲିଣ୍ଡରର ଭିତରକୁ ଯିବା ବା ସିଲିଣ୍ଡରର ବାହାରକୁ ଆସିବା

ସମୟରେହିଁ ବିଦ୍ୟୁତ୍‌ସ୍ରୋତ ଗଲୁଛି । ଚୁମ୍ବକଟି ସ୍ଥିର ରହିଲେ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହେଉନାହିଁ । ଚୁମ୍ବକର ଏହି ଗତି ଯେତେ କ୍ଷିପ୍ର ବିଦ୍ୟୁତ୍‌ସ୍ରୋତର ଶକ୍ତି ସେତେ ଅଧିକ । ବିଦ୍ୟୁତ୍‌ସ୍ରୋତର ପରିମାଣ ସିଲିଣ୍ଡର ଗ୍ଲଚିପଟେ ଗୁଡ଼ାଯାଇଥିବା ତାର କେତେଥର ଗୁଡ଼ାଯାଇଛି ତା ଉପରେ ନିର୍ଭର କରୁଛି ବୋଲି ମଧ୍ୟ ଜଣାପଡ଼ିଲା । ଏହି ପର୍ଯ୍ୟବେକ୍ଷଣର ସାହାଯ୍ୟରେ ଫାରଡ଼େ ପ୍ରଥମେ ଡାୟନାମୋ ତିଆରି କରିଥିଲେ । ଗୋଟିଏ ଦଣ୍ଡଚୁମ୍ବକକୁ ଗତିଶୀଳ କରାଇବା ପରିବର୍ତ୍ତେ ସେ ଗୋଟିଏ ତାର କୁଣ୍ଡଳୀକୁ ଗୋଟିଏ ହର୍ସସୁ ମାଗନେଟ୍ ବା ଘୋଡ଼ାନାଲ ଚୁମ୍ବକର ଦୁଇ ମେରୁ ମଧ୍ୟରେ ବୁଲାଇବାର ବ୍ୟବସ୍ଥା କରିଥିଲେ । ଏହି ତାର କୁଣ୍ଡଳୀକୁ ଜୋରରେ ବୁଲାଇବାପାଇଁ ଏହାକୁ ଚକ ସହ ସଂଯୁକ୍ତ କରାଯାଇଥିଲା । ଚକଟିକୁ ପ୍ରଖର ଜଳସ୍ରୋତ ବା ଜଳପ୍ରପାତଦ୍ୱାରା ବୁଲାଇବାର ବ୍ୟବସ୍ଥା ହୋଇଥିଲା । ଏହି ତାର କୁଣ୍ଡଳୀକୁ ଆର୍ମେଚର କୁହାଯାଏ । ଡାୟନାମୋର ଆର୍ମେଚରକୁ ସାଧାରଣତଃ ବାଷ୍ପ, ଜଳସ୍ରୋତ ବା ବାଷ୍ପୀୟ ଇଞ୍ଜିନ୍ ସାହାଯ୍ୟରେ ଘୂରାଯାଇଥାଏ । ଯେଉଁଠି ଜଳଶକ୍ତି ମିଳିଥାଏ ସେଠାରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନର ଖର୍ଚ୍ଚ ସବୁଠାରୁ କମ୍ । ନିଆଗରାର ବିରାଟ ଜଳପ୍ରପାତର ଶକ୍ତିରେ ଡାୟନାମୋର ଟରବାଇନ୍‌କୁ ଚଳାଇବାର ବ୍ୟବସ୍ଥା ହୋଇଛି । ଟାଟା ହାଇଡ୍ରୋ-ଇଲେକ୍‌ଟ୍ରିକ୍ ପଦ୍ଧତିରେ ବର୍ଷାପାଣିକୁ ଏକ ବିରାଟ ଜଳାଧାରରେ ବହୁତ ଉଚ୍ଚ ସମତଳରେ ରଖାଯାଏ । ତାପରେ ପାଣିକୁ ସେଠାରୁ ପାଇପ୍‌ରେ ଛଡ଼ାଯାଇ ଟରବାଇନ୍‌କୁ ବୁଲାଯାଏ । ଏ ଉଭୟ କ୍ଷେତ୍ରରେ ଟରବାଇନ୍ ଉପରେ ପାଣି ପଡ଼ି ତାକୁ ବୁଲାଇବାର ବ୍ୟବସ୍ଥା କରାଯାଇଛି । ଏହି ଉପାୟରେ ଉତ୍ପନ୍ନ ବିଦ୍ୟୁତ୍ ବ୍ୟାଟେରୀରୁ ଉତ୍ପନ୍ନ ବିଦ୍ୟୁତଠାରୁ ବହୁତ ଶସ୍ତାରେ ମିଳେ । ଏହା ଫଳରେହିଁ ବିଦ୍ୟୁତ୍‌ଶକ୍ତିର ବ୍ୟାପକ ବ୍ୟବହାର ସମ୍ଭବ ହୋଇପାରିଛି ।

ଶକ୍ତିର ଉତ୍ସ ଭବରେ ବାଷ୍ପଠାରୁ ବିଦ୍ୟୁତ୍‌ର ବହୁତ ସୁବିଧା ରହିଛି । କେବଳ ସୁଇଚ୍ ଅଫ୍ ବା ଅନ୍ କରି ବିଦ୍ୟୁତ୍ ଶକ୍ତି ମିଳିପାରିବ । ବିଦ୍ୟୁତ୍ ଶକ୍ତିର ଉତ୍ପାଦନ ବହୁତ ଶୀଘ୍ର ଓ ପରିଷ୍କାର ଭବରେ ହୋଇପାରିବ । କିନ୍ତୁ ବାଷ୍ପପାଇଁ କୋଇଲା ବା ତେଲ ଜାଳିବାକୁ ପଡ଼ିବ । ଏଥିରୁ ନିର୍ଗତ ଧୂଆଁ ସହିତ କେତେକ ବିଷାକ୍ତ ବାଷ୍ପ ମଧ୍ୟ ମିଶି ରହିଥାଏ । ସର୍ବୋପରି ବିଦ୍ୟୁତ୍ ବ୍ୟବହାର କଲେ ପାଉଁଶ ବା ପୋଡ଼ା ଅବଶିଷ୍ଟାଂଶ କିଛି ରହେନାହିଁ ।

ବିଦ୍ୟୁତ୍‌କୁ ମଧ୍ୟ ବହୁତ ଦୂରକୁ ତାର ଦେଇ ପଠାଯାଇ ପାରିବ । ଏଥିପାଇଁ ଖର୍ଚ୍ଚ ମଧ୍ୟ ବହୁତ କମ୍ । କେବଳ ପ୍ରାରମ୍ଭିକ ଖର୍ଚ୍ଚଟା ନିକେ ବେଶୀ । ବିଦ୍ୟୁତ୍‌ସ୍ରୋତ ତାର ଦେଇ ଖୁବ୍ ଦୂରକୁ ବିନା ବାଧାରେ ପ୍ରବାହିତ ହୋଇପାରେ ।



ବିଦ୍ୟୁଦ୍ ମୋଟର ବିଦ୍ୟୁଦ୍ ଡାୟନାମୋର ଠିକ୍ ବିପରୀତ ପଦ୍ଧତିରେ କାମ କରେ । ଡାୟନାମୋରେ ତାର କୁଣ୍ଡଳୀକୁ ବୁଲାଇ ବିଦ୍ୟୁତ୍‌ସ୍ରୋତ ଉତ୍ପନ୍ନ କରାଯିବା

ଘରେ ବିଦ୍ୟୁତ୍ ମୋଟରରେ ବିଦ୍ୟୁତ୍‌ଶକ୍ତି ସାହାଯ୍ୟରେ ତାର କୁଣ୍ଡଳୀକୁ ବୁଲାଯାଏ । ପଙ୍ଖା, ପମ୍ପ୍, ଟ୍ରାମ୍, ବିଦ୍ୟୁତ୍‌ଚାଳିତ ରେଳଗାଡ଼ି ଇତ୍ୟାଦିରେ ବିଦ୍ୟୁତ୍ ମୋଟର ବ୍ୟବହୃତ ହୁଏ । ଡାୟନାମୋର ଯାହା ଦରକାର ମୋଟର ତିଆରି ପାଇଁ ଠିକ୍ ସେହିସବୁ ଦରକାର । ଏଗୁଡ଼ିକୁ ଯୋଡ଼ିବାର ପ୍ରଣାଳୀ ମଧ୍ୟ ଏକ ପ୍ରକାର ।

ବିଦ୍ୟୁତ୍‌ର ବ୍ୟବହାର ଫଳରେ ବିଜ୍ଞାନରେ ଏକ ନୂତନ ବିଭାଗର ସୃଷ୍ଟି ହୋଇଛି । ସେଇଟି ହେଲା ଇଲେକ୍‌ଟ୍ରନିକ୍‌ସ୍ । ଏକ ପରବର୍ତ୍ତୀ ଅଧ୍ୟାୟରେ ଆମେ ଏହି ବିଷୟରେ ଆଲୋଚନା କରିବା ।



## ଟେଲିଗ୍ରାଫ୍

୧୮୩୩ ଖ୍ରୀଷ୍ଟାବ୍ଦରେ ଜନ୍ ହରସେଲ୍ ନାମକ ଜଣେ ଇଂରେଜ ଜ୍ୟୋତିର୍ବିଜ୍ଞାନୀ ଦକ୍ଷିଣ ଆଫ୍ରିକାକୁ ସେଠିକାର ଆକାଶ ପର୍ଯ୍ୟବେକ୍ଷଣ କରିବାକୁ ଯାଇଥିଲେ । ସେ ତାଙ୍କ ସହିତ ଏକ ଶକ୍ତିଶାଳୀ ଦୂରବୀକ୍ଷଣ ଯନ୍ତ୍ର ଓ ଅନ୍ୟାନ୍ୟ କେତେକ ଯନ୍ତ୍ର ନେଇଥିଲେ । ସେଠାକାର ଆକାଶର ନକ୍ସା ଅଙ୍କନ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା କାରଣ ପୃଥିବୀର ଉତ୍ତରାଂଶରେ ବାସକରୁଥିବା ଲୋକମାନେ ତାହା ଆଦୌ ଦେଖି ନ ଥିଲେ । ସେ ଉତ୍ତମାଶା ଅନ୍ତରୀପଠାରେ ତିନି ଚାରିବର୍ଷ ରହି ତାଙ୍କ କାମ ଚଳାଇବା ପାଇଁ ଯୋଜନା କରିଥିଲେ ।

ଏହି ସମୟରେ 'ନ୍ୟୁୟର୍କ ସନ୍' ପତ୍ରିକାର ପ୍ରତିନିଧି ରିଚ୍ଚାର୍ଡ଼ ଲକ୍ ଗୋଟିଏ ଚମତ୍କାର ବୁଦ୍ଧି ବାହାର କଲେ । ସେ ଦେଖିଲେ ଯେ ସେ ଜନ୍ ହରସେଲ୍‌ଙ୍କ ଆବିଷ୍କାର ବିଷୟରେ ଯାହା ଲେଖିବେ ଲୋକମାନେ ତାକୁ ବିଶ୍ୱାସ କରିବେ । କେହି



ଜଣେ ଦକ୍ଷିଣ ଆଫ୍ରିକା ନ ଗଲେ ବା ସେଠାକୁ ଖବର ନ ପଠାଇଲେ ତାଙ୍କ ଲେଖାର ସତ୍ୟତା ପରୀକ୍ଷା କରିବାର ଅନ୍ୟ ଉପାୟ ନାହିଁ । ଖବର ପଠାଇଲେ ବି ହର୍‌ସେଲଙ୍କ ଠାରୁ ଉତ୍ତର ପାଇବାକୁ କେତେ ମାସ ଲାଗିଯିବ ।

ଏଇଥା ଭବି ରିଗ୍ଥର୍ଡ଼ ଲକ୍ ତାଙ୍କ ପତ୍ରିକାକୁ ଯେତେ ଅଦ୍ଭୁତ ଥାଂଭ ମଜା କଥା ଲେଖି ପଠାଇବାରେ ଲଗିଲେ ।

ତାଙ୍କର ପ୍ରଥମ ଲେଖାନେ ସେ ଲେଖିଲେ ଯେ ହର୍ସେଲ୍ ଗୋଟିଏ ନୂଆ ଧରଣର ଦୂରବୀକ୍ଷଣ ଯନ୍ତ୍ର ଉଦ୍ଭାବନ କରିଛନ୍ତି । ସେ ଏହି ଯନ୍ତ୍ରଟିର ଟିକିନିଖି ବର୍ଣ୍ଣନା ଏତେ ଚତୁରତାର ସହିତ କରିଥିଲେ ଯେ ବୈଜ୍ଞାନିକମାନେ ମଧ୍ୟ ବିଶ୍ୱାସ କରିଗଲେ । ତା'ପର ମଜାର ଆରମ୍ଭ । ଲକ୍ ଲେଖିଲେ ଯେ ଏହି ଆଶ୍ଚର୍ଯ୍ୟଜନକ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ହର୍ସେଲ୍ ଦେଖିଛନ୍ତି ଯେ ଚନ୍ଦ୍ରପୃଷ୍ଠରେ ଥିବା ପାହାଡ଼ ପର୍ବତ ଖୁବ୍ ମୂଲ୍ୟବାନ ପଥରର ସ୍ତୂପ । ବିଭିନ୍ନ ଧରଣର ଜୀବଜନ୍ତୁ ମଧ୍ୟ ଚନ୍ଦ୍ରପୃଷ୍ଠରେ ଥିବାର ଦେଖାଯାଇଛି । ବିରାଟ ପେଣ୍ଡୁଲାକୃତିର ଗଛସମାନେ ଚନ୍ଦ୍ରର ସମୁଦ୍ରକୂଳରେ ଅସାଧାରଣ ବେଗରେ ଗଡ଼ୁଥିବାର ମଧ୍ୟ ଲକ୍ଷ୍ୟ କରଯାଇଛି ।

ପାଠକମାନେ ଲକ୍‌ଙ୍କ ଏହି ସବୁ ଲେଖାରେ ବିଶ୍ୱାସ କଲେ ଓ ପଢ଼ି ଆଶ୍ଚର୍ଯ୍ୟ ହେଲେ । ଲକ୍ ଏପରି ଚତୁରତାର ସହ ବର୍ଣ୍ଣନା କରୁଥିଲେ ଯେ ବୈଜ୍ଞାନିକ-ମାନେ ବୋକା ବନି ଯାଉଥିଲେ ।

କେତେ ମାସ ପରେ ଜଣାପଡ଼ିଲା ଯେ ଏସବୁ ଏକ ବିରାଟ ମିଥ୍ୟା ଆସ୍ଫାଳନ । ହୁଏତ ବିଜ୍ଞାନ ଇତିହାସରେ ସବୁଠାରୁ ବଡ଼ ଧରଣର ଗ୍ଳଲବାଜି ।

ଆଜି କିନ୍ତୁ କେହି ଏପରି ଗ୍ଳଲଖି କରିବାକୁ ସାହସ କରିବେ ନାହିଁ । କାରଣ ତାରବାର୍ତ୍ତା ବା ଟେଲିଗ୍ରାଫ୍‌ର ଆବିଷ୍କାର ଫଳରେ ଆମେ ମହାଦେଶ ଓ ମହାସାଗରର ଆରପାରି କଥା ମଧ୍ୟ ମୁହୂର୍ତ୍ତକେ ଜାଣିପାରୁଛୁ ।

ବିଦ୍ୟୁତ୍ ସ୍ରୋତ ଯେ ଗୋଟିଏ ଚୁମ୍ବକକୁ ଘୂରାଇ ପାରୁଛି ଓର୍‌ଷ୍ଟେଡ୍ ଏହା ଆବିଷ୍କାର କରିବା ପରଠାରୁ ଲୋକମାନେ ବିଦ୍ୟୁତ୍‌କୁ ଅନେକ କାର୍ଯ୍ୟରେ ଲଗାଇବାରେ ଲଗିଛନ୍ତି ।

୧୮୦୯ ଖ୍ରୀଷ୍ଟାବ୍ଦ ପାଖାପାଖି ଅଷ୍ଟ୍ରିଆର ଜଣେ ବୈଜ୍ଞାନିକ ଏକ ନୂତନ ବ୍ୟବସ୍ଥାର ଆୟୋଜନ କରିଥିଲେ । ସେ ପ୍ରତି ଅକ୍ଷର ପାଇଁ ଗୋଟେ ଲେଖା ତାର ଅଲଗା ରଖିଥିଲେ । ଏହି ତାରଗୁଡ଼ିକୁ ଗୋଟେ ଜଳପୂର୍ଣ୍ଣ ପାତ୍ର ମଧ୍ୟରେ ରଖା ଯାଇଥିଲା ।

ଯେତେବେଳେ କୌଣସି ଗୋଟିଏ ତାରଦେଇ ବିଦ୍ୟୁତ୍‌ସ୍ରୋତ ଗଲିଲ, ଏହାର ମୂଳରେ ଗୋଟେ ଛୋଟ ବୁଦ୍‌ବୁଦ ଦେଖାଗଲ । ଏହି ଉଦ୍ଭାବନ ଘରିଆଡ଼େ ଚମକ ଆଣିଥିଲେ ମଧ୍ୟ ବିଶେଷ ଫଳପ୍ରଦ ହୋଇନାହିଁ ।

ପରେ ୧୮୨୫ ଖ୍ରୀଷ୍ଟାବ୍ଦରେ ବାରନ୍ ସିଲିଙ୍ଗ୍ ନାମକ ଆଉଜଣେ ଏକ ଚୁମ୍ବକୀୟ ତାରବାର୍ତ୍ତାର ପ୍ରଚଳନ କରିଥିଲେ । ଏଥିରେ ଗୋଟିଏ ତାରଦେଇ ପ୍ରବାହିତ ବିଦ୍ୟୁତ୍‌ସ୍ରୋତ ସାହାଯ୍ୟରେ ଗୋଟେ ଚୁମ୍ବକ କଣ୍ଟାକୁ ଏକ କାଗଜ ଉପରେ କଳା ଧଳା ଚିହ୍ନିତ ଅଂଶ ଉପରେ ଘୂରଯାଉଥିଲ । ସିଲିଙ୍ଗ୍ ଏକ ପ୍ରକାର ସଙ୍କେତ (ᑌode) ବ୍ୟବହାର କରିଥିଲେ । ସେଥିରେ 'କଳା-ଧଳା' ଅଂଶର ଅର୍ଥ ଗୋଟିଏ ଅକ୍ଷର, 'କଳା-କଳା-ଧଳା' ଅଂଶର ଅର୍ଥ ଆଉ ଏକ ଅକ୍ଷର, ଏହିପରି ।

ଇଂରେଜ ପ୍ରଫେସର୍ ଗ୍ଲର୍ଲସ ହ୍ୱେଟ୍‌ଷ୍ଟୋନ ୧୮୩୭ରେ ଏହି ଯନ୍ତ୍ରରେ ସାମାନ୍ୟ ପରିବର୍ତ୍ତନ କରିଥିଲେ । ସେ ଚୁମ୍ବକ କଣ୍ଟାଟିକୁ ଏକ ଡାଏଲ୍ ବା ସମ୍ମୁଖ ଫଳକ ଉପରେ ଘୂରଇବାର ବ୍ୟବସ୍ଥା କରିଥିଲେ । ଏହି ଫଳକର ଧାରେ ଧାରେ ବିଭିନ୍ନ ଅକ୍ଷର ବା ଛବି ଚିହ୍ନିତ କରଯାଇଥିଲ ।



ଚୁମ୍ବକ କଣ୍ଟାଟି ଗୋଟିଏ ଅକ୍ଷରରୁ ଆଉ ଗୋଟିଏ ଅକ୍ଷରକୁ ବୁଲିବାକୁ ଲକ୍ଷ୍ୟ କରି ସମ୍ବାଦ ପଢ଼ାଯାଇ ପାରୁଥିଲା । ଏହା ଏକ ବହୁତ ସମୟସାପେକ୍ଷ ବ୍ୟବସ୍ଥା । ତଥାପି ରେଳବାଇ ବିଭାଗ ଏହାର ଉପଯୋଗିତା ଅନୁଭବ କରି ବହୁ ବର୍ଷ ପର୍ଯ୍ୟନ୍ତ ବ୍ୟବହାର କରିଥିଲେ । ଏଥିଦ୍ୱାରା ହ୍ୱେଟଷ୍ଟୋନ୍ ପ୍ରଚୁର ଅର୍ଥ ରୋଜଗାର କରିଥିଲେ ।

ତା'ପରେ ଆସିଲେ ଏଫ. ବି. ମୋର୍ସ । ସେ ଆଧୁନିକ ତାରବାର୍ତ୍ତା ପ୍ରେରଣ ପଦ୍ଧତିର ଉଦ୍ଭାବକ ।

ମୋର୍ସ ଯେ ଏପରି ଏକ ଉଦ୍ଭାବନ କରିବେ କେହି ଆଗରୁ ଚିନ୍ତାକରି ନ ଥିବେ । କାରଣ ଯଦିଓ ସେ ସ୍କୁଲରେ ବିଜ୍ଞାନ ପଢ଼ିଥିଲେ ସେ ଜଣେ କଳାକାର ହେବାକୁ ପସନ୍ଦ କରିଥିଲେ ଓ ଚିତ୍ରକର ହିସାବରେ ବହୁତ ସୁନାମ ଅର୍ଜନ କରିଥିଲେ ତା'ପରେ ସେ ପ୍ରସିଦ୍ଧ କଳା ନିଦର୍ଶନ ସବୁ ବୁଲି ଦେଖିବାପାଇଁ ୟୁରୋପ ଗସ୍ତରେ ଯାଇଥିଲେ ।

ସେ ୟୁରୋପରୁ ଫେରିଲାବେଳେ ଜାହାଜ ମଧ୍ୟରେ ତାରବାର୍ତ୍ତା ବିଷୟରେ ଶୁଣିଥିଲେ । ତାଙ୍କର ଜଣେ ବୈଜ୍ଞାନିକ ସହଯାତ୍ରୀ ତାଙ୍କୁ ଫ୍ରାନ୍ସରେ ବିଦ୍ୟୁତ୍ ବ୍ୟବହାର ମାଧ୍ୟମରେ ହେଉଥିବା ବିଭିନ୍ନ ଗବେଷଣା ବିଷୟରେ କହିଥିଲେ । ସେ ମଧ୍ୟ ତାଙ୍କ ସହିତ ଆମେରିକାକୁ ନେଉଥିବା ଗୋଟେ ଛୋଟ ବିଦ୍ୟୁତ୍ ଚୁମ୍ବକ ମୋର୍ସଙ୍କୁ ଦେଖାଇଥିଲେ ।

ଏସବୁ ଶୁଣି ମୋର୍ସଙ୍କ ମନରେ ଏକ ପ୍ରଶ୍ନ ସୃଷ୍ଟିହେଲା । ସେ ଭାବିଲେ ବିଦ୍ୟୁତ୍ ସ୍ରୋତ ଯଦି ଯେ କୌଣସି ସ୍ଥାନକୁ ତାରଦେଇ ଯାଇ ପାରୁଛି ତେବେ ଏହା ସମ୍ବାଦ ନେଇ ଯାଇ ପାରିବ ନାହିଁ କାହିଁକି ?

ଏହା ଏକ ଜଟିଳ ପ୍ରଶ୍ନ । ଏ ବିଷୟରେ ଚିନ୍ତାକରିବା ସଙ୍ଗେ ସଙ୍ଗେ ତାଙ୍କୁ ଚିତ୍ର ଆଙ୍କିବାକୁ ପଡ଼ୁଥିଲା । ଥରେ ତାଙ୍କୁ ଏକ ନୂଆ ଧାରଣା ଜୁଟିଲା । ତାଙ୍କର ବନ୍ଧୁ ଡକ୍‌ଟର ଗେଲ୍ ତାଙ୍କର ଏହି ଆଗ୍ରହରେ ଖୁସୀହୋଇ ତାଙ୍କୁ ନ୍ୟୁୟର୍କ ବିଶ୍ୱ-ବିଦ୍ୟାଳୟର କଲେଜ ପରୀକ୍ଷାଗାରରେ କାମ କରିବା ପାଇଁ ସୁଯୋଗ ଦେଲେ ।

ଡକ୍‌ଟର ଗେଲ୍‌ ଯୋସେଫ୍‌ ହେନେରୀ ନାମକ ଆଉ ଜଣେ ବୈଜ୍ଞାନିକଙ୍କୁ ଜାଣିଥିଲେ ଯେ କି ଏହି ବିଷୟରେ କିଛି କାମ କରିଥିଲେ । ବିଜ୍ଞାନ ସମ୍ବନ୍ଧୀୟ ବିଷୟ ନେଇ ଯଦି କେହି ତାଙ୍କ ପାଖକୁ ଆସେ ଯୋସେଫ୍‌ ହେନେରୀ ସବୁବେଳେ ତାକୁ ସାହାଯ୍ୟ କରନ୍ତି । ସେହିପରି ସେ ମୋର୍ସଙ୍କୁ ସାହାଯ୍ୟ କରିଥିଲେ ଓ ୧୮୩୨ରେ ସେ ନିଜେ ତିଆରି କରିଥିବା ପାଞ୍ଚ କିଲୋମିଟର ଲମ୍ବର ଟେଲିଗ୍ରାଫ୍‌ ତାର ଦେଖାଇଥିଲେ । ଏହି ତାରରେ ବିଦ୍ୟୁତ୍‌ ପ୍ରବାହଦ୍ୱାରା ତାରର ଶେଷ ମୁଣ୍ଡରେ ବିଦ୍ୟୁତ୍‌ ଚୁମ୍ବକ ତିଆରି ହେଉଥିଲା ଓ ଚୁମ୍ବକଟି ଗୋଟିଏ ଘଣ୍ଟିରେ ବାରମ୍ବାର ଆଘାତ କରୁଥିଲା । ଏକ ନିର୍ଦ୍ଦିଷ୍ଟ ସଙ୍କେତ ଅନୁସରଣ କରି ଏହି ଘଣ୍ଟାର ଶବ୍ଦକୁ ପଠାଯାଉଥିବା ଓ ଆସୁଥିବା ଶବ୍ଦକୁ ପଢ଼ା ଯାଉଥିଲା ।

ମୋର୍ସ ଏହି ପଦ୍ଧତି ବ୍ୟବହାର କରିବାକୁ ଭାବିଲେ । ତାଙ୍କ ଆଗରେ ଦୁଇଟି ସମସ୍ୟା ରହିଲା—ପ୍ରଥମଟି ହେଲା ମୋଟେ ୫ କି:ମି: ଦୂରତ୍ୱ ମଧ୍ୟରେ କାମ କରୁଥିବା ଉପରୋକ୍ତ ପଦ୍ଧତିଟି କିପରି ଶହ ଶହ କିଲୋମିଟର ମଧ୍ୟରେ କାମ କରିବ; ଦ୍ୱିତୀୟତଃ ମୋର୍ସ ହେନେରୀଙ୍କ ବ୍ୟବହୃତ ସଙ୍କେତ ଧାରାକୁ ପସନ୍ଦ କଲେ ନାହିଁ । ସେ ତା'ଠାରୁ ଏକ ଭିନ୍ନ ସଙ୍କେତ ପ୍ରଚଳନ ପାଇଁ ଇଚ୍ଛାକଲେ ।

ଯୋସେଫ୍‌ ହେନେରୀ ନିଜେ ପ୍ରଥମ ସମସ୍ୟାଟି ସମାଧାନ ପାଇଁ ସାହାଯ୍ୟ କରିଥିଲେ । ଏଥିରେ ବହୁଦୂର ସ୍ଥାନକୁ ସଂଯୋଗ କରୁଥିବା ଟେଲିଗ୍ରାଫ୍‌ ତାରର ବିଭିନ୍ନ ମଧ୍ୟବର୍ତ୍ତୀ ସ୍ଥାନମାନଙ୍କରେ ରିଲେ (Relay) ବା ସଂପ୍ରସାରଣ ବ୍ୟବସ୍ଥା କରାଗଲା । ଏଥିପାଇଁ କେବଳ ଏକ ତାର କୁଣ୍ଡଳୀ ଓ ବ୍ୟାଟେରୀ ଲୋଡ଼ା । ଏହାଦ୍ୱାରା କ୍ଷୀଣ ହୋଇ ଆସୁଥିବା ପ୍ରେରିତ ସଂବାଦକୁ ପୁଣି ଶକ୍ତିଶାଳୀ କରାଯାଇ ପାରୁଥିଲା ।

ଦ୍ୱିତୀୟ ସମସ୍ୟାର ସମାଧାନର ଫଳସ୍ୱରୂପ ବିଖ୍ୟାତ "ମୋର୍ସ କୋଡ୍‌"ର ଆବିଷ୍କାର ହେଲା । ଏହା ଆଜି ପ୍ରାୟ ସମସ୍ତ ପ୍ରକାର ସଂବାଦ ପ୍ରେରଣରେ ବିଶେଷକରି ପଦାତିକ ଓ ନୌସେନାବାହିନୀରେ ସଂବାଦ ସରବରାହ ପାଇଁ ସଂକେତରୂପେ ବ୍ୟବହୃତ ହେଉଛି । ଏଥିରେ କେବଳ ଡଟ୍‌ (Dot) ଓ ଡ୍ୟାସ୍‌ (Dash)ର ବ୍ୟବହାର କରାଯାଏ । ଏହି ଡଟ୍‌ ଓ ଡ୍ୟାସ୍‌ର ପ୍ରତ୍ୟେକ ଗୋଷ୍ଠୀ କିପରି ଗୋଟିଏ ଗୋଟିଏ ଅକ୍ଷର ସୂଚାଇ ଥାଆନ୍ତି ତାହା ନିମ୍ନରେ ପ୍ରଦତ୍ତ ହେଲା ।

## ମୋର୍ସଙ୍କ ସଙ୍କେତ ବ୍ୟବସ୍ଥା

| | | |
|---|---|---|
| A · — | | R · — |
| B — · | J · — — — | S · |
| C — · — | K — · — | T — |
| D — · · | L · — · · | U · · — |
| E · | M — — | V · · — |
| F · · — · | N — · | W · — — |
| G — — · | O — — — | X — · · — |
| H · · · · | P · — — · | Y · — · — — |
| I · · | Q — — · — | Z — — · · |

ମୋର୍ସ ନିଜର ଉଦ୍ଭାବନ ବିଷୟରେ ୧୮୩୭ରେ ଏକ ଲେଖା ଜରିଆରେ ତାଙ୍କ ଦେଶ ସରକାରଙ୍କୁ ଏହି ଧାରାର ବହୁଳ ବ୍ୟବହାର ପାଇଁ ପ୍ରବର୍ତ୍ତାଇଥିଲେ । କିନ୍ତୁ ଏହା କାର୍ଯ୍ୟକାରୀ ହେବାପାଇଁ ବିଳମ୍ବ ହୋଇଥିଲା ଓ ସେଥିପାଇଁ ପ୍ରାୟ ପାଞ୍ଚବର୍ଷ କାଳ ମୋର୍ସ ଦାରିଦ୍ର୍ୟ ଓ ଅବହେଳା ମଧ୍ୟ ଦେଇ କଟାଇଥିଲେ ।

ଶେଷରେ ସରକାର ତାଙ୍କୁ ତିରିଶ ହଜାର ଡଲାର୍ ଦେଇ ତାଙ୍କର ଉଦ୍ଭାବନର ପରୀକ୍ଷାକରି ଦେଖାଇବାକୁ କହିଥିଲେ । ମୋର୍ସ ଓ୍ୱାସିଂଟନ୍‌ଠାରୁ ବାଲ୍‌ଟିମୋର୍ ପର୍ଯ୍ୟନ୍ତ ଖୁଣ୍ଟି ସାହାଯ୍ୟରେ ଟେଲିଗ୍ରାଫ୍ ଲାଇନ ପକାଇଥିଲେ । ଏକ ଶହ କୋଷ ବିଶିଷ୍ଟ ବ୍ୟାଟେରୀରୁ ବିଦ୍ୟୁତ୍‌ସ୍ରୋତ ସଂଗ୍ରହର ବ୍ୟବସ୍ଥା କରାଯାଇଥିଲା । ୧୮୪୪ ଖ୍ରୀଷ୍ଟାବ୍ଦ ମେ' ମାସ ୨୪ ତାରିଖ ଦିନ ପ୍ରଥମ ଥର ପାଇଁ ତାର ସାହାଯ୍ୟରେ ବାର୍ତ୍ତା ପ୍ରେରଣ କରାଯାଇଥିଲା ଓ ଶୁଣାଯାଇଥିଲା । ଏହି ବାର୍ତ୍ତାଟି ଥିଲା "ହ୍ୱାଟ ହାଥ୍ ଗଡ୍ ରଟ୍" ("what hath God wrought") ବା ଭଗବାନ କ'ଣ ସୃଷ୍ଟି କରିଛନ୍ତି ? ପ୍ରକୃତରେ ଏହି ଚମକପ୍ରଦ ଘଟଣାଟି ଦୁନିଆକୁ ପୂରା ବଦଳାଇଦେଲା ।

ପରୀକ୍ଷାଟି ପୂରା ସଫଳ ହୋଇଥିଲା ସତ କିନ୍ତୁ ଆମେରିକା ସରକାର ଏହି ପଦ୍ଧତିର ବହୁଳ ବ୍ୟବହାର ବିଷୟରେ ସିଦ୍ଧାନ୍ତ ନେବାପାଇଁ ବହୁତ ସମୟ ନେଇଥିଲେ । ହେଲେ ବ୍ୟବସାୟୀମାନେ ଆଗେଇ ଆସିଥିଲେ । ଅଳ୍ପ ଦିନ ମଧ୍ୟରେ ସାରାଦେଶରେ ତାରବାର୍ତ୍ତାର ଗୁଞ୍ଜନ ଶୁଣାଗଲା ।



ଧୀରେ ଧୀରେ ବୈଜ୍ଞାନିକ ଓ ଉଦ୍ଭାବକମାନେ ଅନୁଭବ କଲେ ଯେ ଯଦି କେହି ଏକରୁ ଅଧିକ ସଂବାଦ ଗୋଟିଏ ତାର ମାଧ୍ୟମରେ ପଠାଇ ପାରିବ ତେବେ ସେ ବହୁତ ଅର୍ଥ ଅର୍ଜନ କରିପାରିବ । ଏମାନଙ୍କ ମଧ୍ୟରେ ଜଣେ ଯୁବକ ଥିଲେ । ତାଙ୍କ ନାଁ ଆଲେକ୍‌ଜାଣ୍ଡର ଗ୍ରାହାମ୍ ବେଲ୍ । ତାଙ୍କୁ ଆଉ ଏକ ବଡ଼ ଉଦ୍ଭାବନ କରିବାର ସୌଭାଗ୍ୟ ଜୁଟିଲା । ସେଇଟି ହେଉଛି ଟେଲିଫୋନ୍ । ବେଲ୍ ବଧିର ପିଲାମାନଙ୍କୁ ପାଠ ପଢ଼ାଉ ଥିବାରୁ ମଣିଷ କାନର ଗଠନ ଓ କାମ ସମ୍ବନ୍ଧରେ ଭଲଭାବରେ ପଢ଼ିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା କିପରି କଥାବାର୍ତ୍ତାକୁ ଦୃଶ୍ୟମାନ

କରିପାରିବେ ଯାହା ଫଳରେ ଏକ କମ୍ପନଶୀଳ କଣ୍ଠାକୁ ଲକ୍ଷ୍ୟ କରି ବଧିର ପିଲମାନେ ତାହା ପଢ଼ିପାରିବେ ।

ଗୋଟିଏ ପୋଖରୀରେ ଟେକାଟି ପକାଇଲେ ଯେପରି ଉପରେ ଛୋଟ ଛୋଟ ଢେଉସବୁ ସୃଷ୍ଟି ହୋଇ ଚାରିଆଡ଼କୁ ଖେଳେଇ ହୋଇଯାଆନ୍ତି, ଠିକ୍ ସେହିପରି ଶବ୍ଦ ବାୟୁମଣ୍ଡଳରେ ଖେଳେଇ ହୋଇଯାଉଥିବା ଚାପର ଢେଉ ସୃଷ୍ଟିକରେ । ଏହି ଚାପ-ଢେଉ ଗୁଡ଼ିକ ଯେତେବେଳେ ଆମ କାନରେ ଆଘାତ ଦେଇ ଏଥିରେ ଥିବା କର୍ଣ୍ଣ ପରଦାକୁ ଦୋହଲାଇ ଦିଅନ୍ତି ଆମେ ଶବ୍ଦ ଶୁଣିପାରୁ । ସେହିପରି ଆମେ ଟେଲିଫୋନ୍‌ରେ କଥା କହିବାବେଳେ, ଏଥିରୁ ସୃଷ୍ଟି ହେଉଥିବା ଚାପ-ତରଙ୍ଗ ଗୋଟେ ଲୁହା ଡାୟାଫ୍ରାମରେ କମ୍ପନ ସୃଷ୍ଟି କରେ । ଫଳରେ ଡାୟାଫ୍ରାମ୍‌ଟି ଶବ୍ଦତରଙ୍ଗ ସହିତ ତାଳ ରଖି କମ୍ପିତ ହୋଇଥାଏ ।

ଦିନେ ବେଲ୍ ତାଙ୍କର ସହକର୍ମୀ ଓ୍ୟାଟସନ୍‌ଙ୍କ ସହିତ ପରୀକ୍ଷାଗାରରେ କାମ କରୁଥାଆନ୍ତି । ସେମାନଙ୍କର କାମ ଥିଲା ବିଦ୍ୟୁତ୍‌ପ୍ରବାହିତ ଏକ ବିଦ୍ୟୁତ୍-ଚୁମ୍ବକୀୟ ତାର ସାହାଯ୍ୟରେ ଗୋଟିଏ ଧାତୁର ପାତିଆରେ କମ୍ପନ ସୃଷ୍ଟି କରିବା । ହଠାତ୍ ପାତିଅଟି ଲାଗି ରହିଗଲା । ତେଣୁ ଓ୍ୟାଟ୍‌ସନ୍ ଏହାକୁ ଟାଣିଦେଲେ । ଫଳରେ ଯେଉଁ ଶବ୍ଦ ହେଲା ତାହା ଦୁଇ କୋଠରୀ ମଧ୍ୟରେ ଲାଗିଥିବା ତାର ଦେଇ ଅନ୍ୟ କୋଠରୀରେ କାର୍ଯ୍ୟରତ ବେଲଙ୍କ ନିକଟରେ ପହଞ୍ଚିଲା । ସେ ସାଙ୍ଗେ ସାଙ୍ଗେ କ'ଣ ହେଲା ବୋଲି ଦେଖିବାକୁ ଦୌଡ଼ି ଆସିଲେ । ସେ ଯାହା ଦେଖିଲେ ସେଥିରେ ସ୍ତମ୍ଭୀଭୂତ ହୋଇଗଲେ । ଭଗବାନ୍ ମଣିଷକୁ ଆହୁରି ଗୋଟିଏ ଆଶ୍ଚର୍ଯ୍ୟ ବସ୍ତୁ ଦେଖାଇଲେ ।


ଆଲେକ୍‌ଜାଣ୍ଡର୍ ଗ୍ରାହାମ୍‌ବେଲ୍

ଏହି ଉଭାବନକୁ ନିଖୁଣ ରୂପ ଦେବାପାଇଁ ବେଲ୍‌ଙ୍କୁ ଆହୁରି ଏକ ବର୍ଷ ଲାଗିଗଲା । ତାଙ୍କର ଯନ୍ତ୍ରରେ ଗୋଟିଏ କଥାକୁହା କ'ହାଳୀ ଥିଲା । ଏହାର ଫକୀର୍ଣ୍ଣ-ଭାଗରେ ଗୋଟିଏ ପତଳା ପାତିଆ ଖଞ୍ଜା ହୋଇଥାଏ । କେହି ଏଥିରେ କଥା କହିଲେ ତାର ଶବ୍ଦତରଙ୍ଗଦ୍ୱାରା ଏହି ପାତିଆରେ କମ୍ପନ ସୃଷ୍ଟି ହୁଏ । ଏହି କମ୍ପନ



ବିଦ୍ୟୁତ୍-ଚୁମ୍ବକୀୟ ଓ.ଆ କୁଣ୍ଡଳୀ ଦେଇ ପ୍ରବାହିତ ବିଦ୍ୟୁତସ୍ରୋତରେ କମ୍ପନ ସୃଷ୍ଟି କରେ । ଏହି କମ୍ପିତ ବିଦ୍ୟୁତ୍‌ସ୍ରୋତ ତାର ମାଧ୍ୟମରେ ଗତିକରି ଅନ୍ୟ ପଟେ ଶବ୍ଦ-ଗ୍ରହଣ ପାଇଁ ଥିବା ଯନ୍ତ୍ରରେ ଥିବା ଡାୟାଫ୍ରାମରେ ଅନୁରୂପ ସୃଷ୍ଟିକରେ । ଫଳରେ ଡାୟାଫ୍ରାମର କମ୍ପନଦ୍ୱାରା ବାୟୁମଣ୍ଡଳରେ ତରଙ୍ଗ ସୃଷ୍ଟି ହୁଏ ଓ ଏହି ତରଙ୍ଗ

ଆରପଟେ କଥା କହୁଥିବା ଲୋକର ଶବ୍ଦଦ୍ୱାରା ସୃଷ୍ଟି ହେଉଥିବା ତରଙ୍ଗ ସଙ୍ଗେ ସମାନ । ତେଣୁ ଏହି ତରଙ୍ଗଦ୍ୱାରା ଶୁଣିବା ଲୋକର କାନରେ ଠିକ୍ କହୁଥିବା ଲୋକ ଶବ୍ଦ ଗୁଡ଼ିକୁ ସୃଷ୍ଟିକରେ । ଏଣୁ ଆମେ ବହୁ ଦୂରରେ ଥାଇ ମଧ୍ୟ କଥା ସବୁ ଶୁଣିପାରୁ ।

୧୮୭୬ରେ ଫିଲଡେଲଫିଆରେ ହୋଇଥିବା ପ୍ରଦର୍ଶନୀରେ ବେଲଙ୍କ ଉଦ୍ଭାବନ ପ୍ରଥମ ପୁରସ୍କାର ପାଇଥିଲା । ପରେ ଏହି ପଦ୍ଧତିର ଉନ୍ନତି କରାଯାଇ ବହୁଳ ବ୍ୟବହାର କରାଗଲା ।

ମହାଦେଶ ଗୁଡ଼ିକର କୋଣେ କୋଣେ ଟେଲିଗ୍ରାଫ୍ ଓ ଟେଲିଫୋନ୍‌ର ବ୍ୟବହାର ଖେଳିଗଲା । କିନ୍ତୁ, ସାଗର, ମହାସାଗର ଡେଇଁ ସମ୍ବାଦ ପ୍ରେରଣ ସମ୍ଭବ ହେଲାନାହିଁ । ଏହା ଏକ ସମସ୍ୟାରୂପେ ଦେଖାଦେଲା । ଅନେକ ଚେଷ୍ଟା, ଅନେକ ବ୍ୟର୍ଥତା ପରେ ମଣିଷର ଉଦ୍ୟମ ସଫଳ ହେଲା ।

ଏହା ଏକ ସହଜ ବ୍ୟାପାର ନଥିଲା । ଏଥିପାଇଁ ସମୁଦ୍ରଶଯ୍ୟା ଉପରେ କେବଲ୍ (Cable) ବିଛାଇବାକୁ ପଡ଼ିଲା । ସାଗର ଗୁଡ଼ିକର ଗଭୀରତା ସ୍ଥାନେ ସ୍ଥାନେ ଏକାଧିକ କିଲୋମିଟର । ଏହିଥିରୁ ସାଗରଶଯ୍ୟାରେ କେବଲ୍ ବିଛାଇବା ଯେ କେତେ କଷ୍ଟକର ହୋଇଥିବ ତାହା ସହଜରେ ଅନୁମେୟ । ଯାହା ଜଣାଯାଏ ଭାରତରେ ପ୍ରଥମେ ପାଣି ତଳେ ସଂବାଦ ପ୍ରେରଣ ସଫଳତାର ସହିତ କରାଯାଇଥିଲା । ଇଷ୍ଟ-ଇଣ୍ଡିଆ କମ୍ପାନୀର ଟେଲିଗ୍ରାଫ୍ ଡାଇରେକ୍ଟର ଡ. ଓସନ୍‌ସି ୧୮୩୯ରେ ଏକ କେବଲ୍ ବାର୍ତ୍ତା ହୁଗୁଳୀ ନଦୀ ଆରପାଖକୁ ପଠାଇଥିଲେ । ଏଥିରେ ବ୍ୟବହୃତ କେବଲରେ ତାର ଉପରେ ରବରର ଆବରଣ ଥିଲା ଓ ଏହାକୁ ଏକ ବାଉଁଶନଳୀ ମଧ୍ୟଦେଇ ନିଆଯାଇଥିଲା ।

ଇଂଲଣ୍ଡ ଓ ଫ୍ରାନ୍‌ସକୁ ତାରବାର୍ତ୍ତାଦ୍ୱାରା ସଂଯୁକ୍ତ କରିବାପାଇଁ ଜନ୍ ଓ୍ୟାଟ୍‌କିନ୍‌ସ ବ୍ରେଟ ପ୍ରଥମେ ଚେଷ୍ଟା କରିଥିଲେ । ତାଙ୍କର ଇଞ୍ଜିନିୟର ଭାଇ ମଧ୍ୟ ତାଙ୍କୁ ଏଥିରେ ସାହାଯ୍ୟ କରିଥିଲେ । ଉପରୋକ୍ତ କାର୍ଯ୍ୟ ଶେଷ କରିବା ପାଇଁ ସେମାନେ ଚୁକ୍ତିବଦ୍ଧ ହୋଇଥିଲେ ଓ ଚୁକ୍ତିର ଶେଷ ତାରିଖ ଥିଲା ସେପ୍‌ଟେମ୍ବର ୧, ୧୮୫୦ । କିନ୍ତୁ ସେମାନେ କେବଲ୍ ପ୍ରସ୍ତୁତ କରିସାରିଲାବେଳକୁ ଆଉ ମାତ୍ର ତିନୋଟି











ଆରମ୍ଭରୁ ଆଜିଯାଏ ଟେଲିଫୋନ୍‌ର ବିବର୍ତ୍ତନ

ଦିନ ବାକି । ପୁଣି କେବଲ୍ ବିଛାଇବାକୁ ପଡ଼ିବ । ଯାହାହେଉ ସେମାନେ ଅକ୍ଳାନ୍ତ ପରିଶ୍ରମ କରି ଚୁକ୍ତି ଶେଷହେବା ପୂର୍ବରୁ କେବଲ୍ ବିଛାଇବା ଶେଷକରି ସଫଳତାର ସହିତ ସଂବାଦ ପ୍ରେରଣ କରିପାରିଥିଲେ ।

କିନ୍ତୁ କ'ଣ ହେଲା କେଜାଣି । ତା ପର ଦିନ ସକାଳୁ ଆଉ ସମ୍ବାଦ ପଠାଯାଇ ପାରିଲା ନାହିଁ । ଅନୁସନ୍ଧାନରୁ ଜଣାପଡିଲା ଯେ ଗୋଟିଏ ମାଛଧରା ଡଙ୍ଗାର ଲଙ୍ଗର୍ ଏହି କେବଲ୍ ସହିତ ଛନ୍ଦି ହୋଇଯିବାରୁ କେଉଟ ତାର ବନ୍ଧୁକୁ ଦେଖାଇବାପାଇଁ କେବଲର କିଛି ଅଂଶ କାଟି ନେଇ ଯାଇଛି ।

ଆଟ୍‌ଲାଣ୍ଟିକ୍ ଦେଇ କେବଲ୍ ବିଛାଇବା ଏକ ଦୁରୂହ ବ୍ୟାପାର । ଆମେରିକୀୟ ଓ ଇଂରେଜମାନେ ମିଳିତ ଭାବରେ ଏଥିପାଇଁ ଲାଗିପଡ଼ିଲେ । ଦୁଇ-ଦେଶର ନୌସେନା ମଧ୍ୟ ଏଥିରେ ସାହାଯ୍ୟ କଲେ । କେତେ ବାଧାବିଘ୍ନ ସତ୍ତ୍ୱେ କାମଟି ୧୮୬୬ରେ ସଂପୂର୍ଣ୍ଣ ହେଲା । ଆୟାର୍‌ଲାଣ୍ଡର ଦକ୍ଷିଣ-ପଶ୍ଚିମ ପଟେ ଥିବା ଭାଲେନ୍‌ସିଆ ଉପସାଗରରୁ ନିଉଫାଉଣ୍ଡଲାଣ୍ଡ ପର୍ଯ୍ୟନ୍ତ କେବଲ୍ ବିଛା ହେଲା ତାପରେ କାନାଡ଼ାକୁ ମଧ୍ୟ ଏହା ବିସ୍ତାରିତ ହେଲା । ଏହିପରି ଆଟ୍‌ଲାଣ୍ଟିକ ପାରିହୋଇ ୟୁରୋପ ଓ ଆମେରିକା ପରସ୍ପର ସହିତ ସଂଯୁକ୍ତ ହେଲେ ।

୧୮୬୬ ପରେ ଆହୁରି ଅନେକ ସମୁଦ୍ର ତଳେ କେବଲ୍ ବିଛାଗଲା । ୧୮୭୦ରେ ଭାରତ ଓ ବ୍ରିଟେନ୍ ମଧ୍ୟରେ ଯୋଗାଯୋଗ ସ୍ଥାପିତ ହେଲା । ତା ପୂର୍ବରୁ ଇଂଲଣ୍ଡରୁ ବମ୍ବେ ଗୋଟିଏ ଟେଲିଗ୍ରାମ ଆସିବାପାଇଁ ଗୋଟେ ସପ୍ତାହ ଲାଗୁଥିଲା । ସେତେବେଳେ ସମ୍ବାଦଗୁଡ଼ିକୁ ରିଲେ (Relay) ମାଧ୍ୟମରେ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ପଠାଯାଉଥିଲା । ଫଳରେ ବହୁତ ଭୁଲ ହେଉଥିଲା । ଏପରିକି ଶେଷବେଳକୁ ପ୍ରକୃତ ସମ୍ବାଦଟି ମଧ୍ୟ ପଢ଼ିବା କଷ୍ଟକର ହେଉଥିଲା । ସମୁଦ୍ରତଳେ କେବଲ୍ ବିଛା-ହେବା ପରଠାରୁ ସମ୍ବାଦ ପ୍ରେରଣ କେବଳ କେତୋଟି ମିନିଟ୍‌ର କଥା ହୋଇ ଯାଇଛି ।

ସମୟକ୍ରମେ ନୂଆ ନୂଆ ଉଦ୍ଭାବନ ଆସିଲା । ଆମେ ତ ଦେଖିଲେ କିପରି ଟେଲିଫୋନ୍‌ଦ୍ୱାରା ଶହ ଶହ ମାଇଲ ଦୂରରୁ ମଧ୍ୟ କଥାବାର୍ତ୍ତା ସମ୍ଭବ ହେଉଛି । ତା'ପରେ ଆସିଲା ରେଡ଼ିଓ, ଟେଲିଭିଜନ୍ ।

ଆଜି ମଣିଷ ସାରା ଦୁନିଆର ଖବର ସକାଳ ଖବର କାଗଜରୁ ପଢ଼ି ଜାଣି ପାରୁଛି । ଦୁନିଆର ଦୂରତମ ସ୍ଥାନରୁ ମଧ୍ୟ ସମ୍ବାଦ ଆସି ପାରୁଛି ଓ ଗତାଗତି ଛପା ହୋଇ ଯାଉଛି ।

ଆମେ ଆଜି ଦୂର-ସଂବାଦ-ଯୋଗାଯୋଗ ବା ଟେଲିକମ୍ୟୁନିକେସନ୍ ବ୍ୟବସ୍ଥାର ଏକ ନୂତନ ଯୁଗର ପ୍ରାରମ୍ଭରେ ପହଞ୍ଚିଛୁ । ଯୋଗାଯୋଗ ଉପଗ୍ରହ ବା କମ୍ୟୁନିକେସନ୍ ସାଟେଲାଇଟ୍ ମାଧ୍ୟମରେ ଖୁବ୍ ଶୀଘ୍ର ବିଶ୍ୱଟେଲିଗ୍ରାଫ୍, ଟେଲିଫୋନ୍ ଓ ଟେଲିଭିଜନ୍ ସଂସ୍ଥା ସୃଷ୍ଟିହେବାକୁ ଯାଉଛି । ମଣିଷ ଜାତିର ଶ୍ରେଷ୍ଠ କୃତିତ୍ୱ ମଧ୍ୟରେ ଆଜିର ଦ୍ରୁତ ଯୋଗାଯୋଗ ବ୍ୟବସ୍ଥା ଅନ୍ୟତମ ।





## ପରମାଣୁ ଶକ୍ତି

ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ପରମାଣୁ ଶକ୍ତିକୁ ଏକ ଧ୍ୱଂସାତ୍ମକ ଶକ୍ତି ବୋଲି ଭବିଥାଆନ୍ତି । ଏହାର ପ୍ରଧାନ କାରଣ ପରମାଣୁ ଶକ୍ତି ଦ୍ୱିତୀୟ ମହାସମର ସମୟରେ ଆବିଷ୍କୃତ ହୋଇଥିଲା । ଡିସେମ୍ବର ୨, ୧୯୪୨ । ଏହିଦିନ ଏନ୍‌ରିକୋ-ଫର୍ମିଙ୍କ ନେତୃତ୍ୱରେ ପରିଚାଳିତ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଏକ ବୈଜ୍ଞାନିକ ଦଳ ଚିକାଗୋ ବିଶ୍ୱବିଦ୍ୟାଳୟରେ ପ୍ରଥମ ଥର ପାଇଁ ସଫଳତାର ସହିତ ପରମାଣୁ ଶୃଙ୍ଖଳ ପ୍ରକ୍ରିୟା (Nuclear chain reaction) ସମ୍ଭବ କରି ପାରିଥିଲେ । ବିଜ୍ଞାନ

ବିଷୟରେ ଏହା ଏକ ଘୋର ଦୁଃଖର ବିଷୟ ଯେ ଯାହା ମାନବର ପରମ କଲ୍ୟାଣକାରୀ ଶକ୍ତିର ଉତ୍ସ, ସେ ପୁଣି ମାନବସମାଜକୁ ଅକଥନୀୟ ଦୁଃଖ ଓ ଧ୍ୱଂସ ପଥରେ ମଧ୍ୟ ଟାଣି ନେଇପାରେ ।




ପରମାଣୁ ବୋମା ପ୍ରଥମ ଥର ପାଇଁ ୧୯୪୫ ଅଗଷ୍ଟ ୬ ତାରିଖ ଦିନ ଜାପାନର ହିରୋସିମା ସହର ଉପରେ ପକାଯାଇଥିଲା । ତାର ତିନି ଦିନ ପରେ ଆଉ ଗୋଟିଏ ବମ୍ ପଡ଼ିଥିଲା ଶିଳ୍ପସମୃଦ୍ଧ ସହର ନାଗାସାକି ଉପରେ । ଦୁଇଟିଯାକ ବମ୍ ଭୂମିଠାରୁ ଛଅ ଶହ ମିଟର ଉପରେ ବିସ୍ଫୋରଣ ଘଟିଥିଲା । ଏହି ଦୁଇ ବିସ୍ଫୋରଣ ଫଳରେ ଅତି ଭୟାନକ ଧ୍ୱଂସଲୀଳା ସଂଘଠିତ ହୋଇଥିଲା । ଦୁଇଟିଯାକ ସୌନ୍ଦର୍ଯ୍ୟ-

ପୂର୍ଣ୍ଣ ନଗର ପ୍ରାୟତଃ ଧୂଳିରେ ମିଶିଗଲା । ଘର ସବୁ ପାଉଁଶରେ ପରିଣତ ହେଲା । ନରନାରୀ ଓ ପିଲାମାନେ ମଲେ ବା ବିକଳାଙ୍ଗ ହେଲେ । ହିସାବ ଅନୁଯାୟୀ ଲକ୍ଷେରୁ ବେଶୀ ଲୋକଙ୍କର ପ୍ରାଣହାନି ହୋଇଥିଲା ଓ ପଚସ୍ତରୀ ହଜାରରୁ ଊର୍ଦ୍ଧ୍ୱ ଲୋକଙ୍କର ପତା ମିଳିଲାନାହିଁ ବା ବିକଳାଙ୍ଗ ହେଲେ ।

ତେଣୁ ସ୍ୱତଃ ମନକୁ ପ୍ରଶ୍ନ ଆସେ ଏହି ପରମାଣୁ ଶକ୍ତିଟି କ'ଣ ? ଏହାକୁ ବୁଝିବାକୁ ହେଲେ ଆମକୁ ପ୍ରଥମେ ବସ୍ତୁ, ମୌଳିକ ପଦାର୍ଥ, ଅଣୁ, ପରମାଣୁ ଗୁଡ଼ିକ ବିଷୟରେ ଧାରଣା ଆଣିବା ଦରକାର ।

ଯାହାକୁ ନେଇ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ର ଇତ୍ୟାଦି ଗଠିତ ଆମେ ତାକୁ



ବସ୍ତୁ ବୋଲି କହୁ । ପ୍ରତ୍ୟେକ ବସ୍ତୁ କେତୋଟି ଉପାଦାନର ସମାହାରରେ ଗଠିତ । ଏହି ଉପାଦାନଗୁଡ଼ିକୁ ଭଙ୍ଗି ଆଉ କୌଣସି ସୂକ୍ଷ୍ମତର ଅଲଗା ଉପାଦାନ ସୃଷ୍ଟି କରଯାଇ ପାରିବ ନାହିଁ । ତେଣୁ ଏହି ଉପାଦାନଗୁଡ଼ିକୁ ମୌଳିକ ପଦାର୍ଥ କୁହାଯାଏ । ସୃଷ୍ଟିରେ ଏପର୍ଯ୍ୟନ୍ତ ମିଳିଥିବା ମୌଳିକ ପଦାର୍ଥର ସଂଖ୍ୟା ୯୨ । ବୈଜ୍ଞାନିକମାନେ ପରୀକ୍ଷାଗାରରେ ଆହୁରି ୧୨ଟି ଖଣ୍ଡେ ମୌଳିକ ପଦାର୍ଥ ପ୍ରସ୍ତୁତ କରିଛନ୍ତି । ମୌଳିକ ପଦାର୍ଥମାନଙ୍କ ମଧ୍ୟରେ ଉଦ୍‌ଜାନ ସବୁଠାରୁ ହାଲୁକା ଓ ୟୁରେନିୟମ ସବୁଠାରୁ ଭରୀ । ଏହି ମୌଳିକ ପଦାର୍ଥମାନଙ୍କ ମଧ୍ୟରେ ଅଧିକାଂଶ ଘନ

ଅବସ୍ଥାରେ ଥାଆନ୍ତି । ଯଥା ଲୁହା, ସିଲ୍‌ଭର, ତମ୍ବା, ସୀସା ଇତ୍ୟାଦ । ଆଉ ପୁଣ ବ୍ରୋମିନ୍, ପାରଦ ପରି କେତେ ତରଳ ଅବସ୍ଥାରେ ଓ କ୍ଲୋରିନ୍ ଅମ୍ଳଯାନ ପ୍ରଭୃତି ଗ୍ୟାସୀୟ ଅବସ୍ଥାରେ ମିଳି ଥାନ୍ତି । ମୌଳିକ ବସ୍ତୁ କେତୋଟିର ସମ୍ମିଶ୍ରଣରେ ଯଦି ଏକ ନୂଆ ବସ୍ତୁର ସୃଷ୍ଟି ହୁଏ ତେବେ ତାକୁ ଯୌଗିକ ପଦାର୍ଥ କୁହାଯାଏ । ଉଦାହରଣ ସ୍ୱରୂପ ଆମ ପୃଥିବୀର ଗ୍ୱରି ଭଗରୁ ତିନି ଭଗରେ ଥିବା ଜଳ ହେଉଛି ଉଦ୍‌ଜାନ ଓ ଅମ୍ଳଜାନ ଗ୍ୟାସ ଦୁଇଟିକୁ ନେଇ ଗଠିତ ଏକ ଯୌଗିକ ପଦାର୍ଥ । ଯୌଗିକ ପଦାର୍ଥ ଗଠନ ପାଇଁ ମୌଳିକ ବସ୍ତୁ ଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଅନୁପାତରେ ହିଁ ମିଶିଥାନ୍ତି । ଯୌଗିକ ପଦାର୍ଥର ଗୁଣାବଳୀ, ଏହାର ଉପାଦାନଭବେ ମିଶିଥିବା ମୌଳିକ ପଦାର୍ଥଗୁଡ଼ିକ ଗୁଣାବଳୀଠାରୁ ସଂପୂର୍ଣ୍ଣ ପୃଥକ୍ । ଉଦାହରଣ ସ୍ୱରୂପ ଆମେ ସମସ୍ତେ ଜାଣୁ ପାଣି ନିଆଁ ଲିଭଇବାରେ ସାହାଯ୍ୟ କରେ । କିନ୍ତୁ ଉଦ୍‌ଜାନ ନିଜେ ଜଳେ ଓ ଅମ୍ଳଜାନ ଜଳାଇବାରେ ସାହାଯ୍ୟ କରେ ।

ଆମେ ଯଦି ଚକ୍ ଖଣ୍ଡେକୁ ନେଇ ଟିକିଟିକି କରିବସୁ ତେବେ ଦେଖାଯିବ ପ୍ରତ୍ୟେକ ଖଣ୍ଡର ଗୁଣ ଅବିଭକ୍ତ ଚକ୍‌ର ଗୁଣ ଯାହା ଠିକ୍ ତାହା ହିଁ ରହୁଛି । କିନ୍ତୁ ଏପରି ଭଙ୍ଗି ଭଙ୍ଗି ଗଲେ ଏକ ସମୟ ଆସିବ ଯେତେବେଳେ ଚକ୍‌ର ଭଗ୍ନାଂଶକୁ ଆଉ ଭଙ୍ଗିହେବ ନାହିଁ । ଏହି କ୍ଷୁଦ୍ରତମ ଅଂଶକୁ ଚକ୍‌ର ଅଣୁ କୁହାଯାଏ । ଗ୍ରୀକ୍ ଭଷାରେ 'ମଲିକ୍ୟୁଲ୍'ର ଅର୍ଥ କମ୍ ବସ୍ତୁତ୍ୱବିଶିଷ୍ଟ ପଦାର୍ଥ ।

ଚକ୍‌ର ଅଣୁଗୁଡ଼ିକ ତିନୋଟି ମୌଳିକ ବସ୍ତୁର ସମାହାର । ସେଗୁଡ଼ିକ ହେଲେ କାଲସିୟମ୍, ଅମ୍ଳଜାନ ଓ ଅଙ୍ଗାର । ଚକ୍‌ର ଅଣୁକୁ ଏହି ତିନି ମୌଳିକ ପଦାର୍ଥର ପରମାଣୁରେ ବିଭକ୍ତ କରଯିବା ପରେ ଚକର ମୂଳ ଗୁଣ ନଷ୍ଟ ହୋଇଯିବ ।

ସେହିପରି ଜଳର ଅଣୁ ଦୁଇଟି ଉଦଜାନ ପରମାଣୁ ଓ ଗୋଟିଏ ଅମ୍ଳଜାନ ପରମାଣୁ ନେଇ ଗଠିତ । ପରମାଣୁର କ୍ଷୁଦ୍ରତା ସମ୍ବନ୍ଧରେ ଧାରଣା ଆଣିବା ପାଇଁ କୁହାଯାଇପାରେ ଯେ ଗୋଟିଏ ବର୍ଷାଟୋପାରେ ଯେତୋଟି ଜଳର ଅଣୁ ରହିଛି ତାହା ପ୍ରାୟ ଭୂମଧ୍ୟସାଗରରେ ଥିବା ଜଳବିନ୍ଦୁର ସଂଖ୍ୟା ସହ ସମାନ । ତେଣୁ ଆମେ ଦେଖିଲେ, ଯୌଗିକ ପଦାର୍ଥ କ୍ଷେତ୍ରରେ ପଦାର୍ଥର ଗୁଣ ରକ୍ଷା କରିଥିବା କ୍ଷୁଦ୍ରତମ ଅଂଶକୁ ଅଣୁ କୁହାଯାଏ ।

କିନ୍ତୁ ମୌଳିକ ପଦାର୍ଥ କ୍ଷେତ୍ରରେ ଏହି କ୍ଷୁଦ୍ରତମ ଅଂଶକୁ ପରମାଣୁ କୁହାଯାଏ । ଖଣ୍ଡେ ଲୁହାକୁ କାଟି କାଟି ଯେଉଁ କ୍ଷୁଦ୍ରତମ ଅଂଶ ଲୁହାର ଗୁଣକୁ ବଜାୟ ରଖିଥିବ ତାକୁ ଲୁହାର ପରମାଣୁ କୁହାଯାଏ । ଗ୍ରୀକ୍ ଭାଷାରେ ଆଟମ ଶବ୍ଦର ଅର୍ଥ ଗୋଟିଏ ବସ୍ତୁର-କ୍ଷୁଦ୍ରତମ ଭଗ୍ନାଂଶ ।

ବହୁ ପୁରାତନ ସମୟରେ ଗ୍ରୀକ୍ ଦାର୍ଶନିକମାନେ ବିଶ୍ୱାସ କରୁଥିଲେ ଯେ ପ୍ରତ୍ୟେକ ବସ୍ତୁକୁ ଚୂରି ସୀମାହୀନ ଭାବରେ ଛୋଟ ଛୋଟ ଖଣ୍ଡରେ ବିଭକ୍ତ କରଯାଇ-ପାରିବ । କିନ୍ତୁ ଆଉ କେତେକଙ୍କ ମତ ଥିଲା ଯେ ଏକ ନିର୍ଦ୍ଦିଷ୍ଟ ଆକାରଠାରୁ ଗୋଟିଏ ବସ୍ତୁକୁ ଆଉ କ୍ଷୁଦ୍ରତର କରଯାଇ ପାରିବ ନାହିଁ । ଏହି ଲୋକମାନେ ହିଁ ପ୍ରଥମେ ପରମାଣୁର ଧାରଣା ସୃଷ୍ଟି କରିଥିଲେ ।

ପରମାଣୁର ଭିତର ପ୍ରାୟତଃ ଖାଲି । ଏହା ପ୍ରଧାନତଃ ତିନୋଟି କଣିକା ନେଇ ଗଠିତ, ଯଥା—ପ୍ରୋଟନ, ଇଲେକ୍ଟ୍ରନ୍ ଓ ନିୟୁଟ୍ରନ୍ । ପ୍ରତ୍ୟେକ ପରମାଣୁର ମଧ୍ୟଭାଗରେ ନିଉକ୍ଲିୟସ୍ ଥାଏ । ଏହି ନିଉକ୍ଲିୟସ ପରମାଣୁର ପ୍ରାୟ ସବୁ ଓଜନ ବହନ କରିଥାଏ । ଠିକ୍ ସୂର୍ଯ୍ୟ ଚାରିପଟେ ଗ୍ରହସବୁ ବୁଲିଲାପରି ଏହି ନିଉକ୍ଲିୟସ୍ ଚାରିପଟେ ଅତିଛୋଟ ଓ ହାଲୁକା ଇଲେକଟ୍ରନ୍ ସବୁ ଅତି କ୍ଷିପ୍ରଗତିରେ ନିର୍ଦ୍ଦିଷ୍ଟ କକ୍ଷ ଦେଇ ଘୂରୁଥାଆନ୍ତି । ଇଲେକ୍ଟ୍ରନରେ ଅତି ଅଳ୍ପ ବିଯୁକ୍ତାତ୍ମକ ବା ନେଗେଟିଭ୍ ଇଲେକ୍ଟ୍ରିକ୍ ଚାର୍ଜ ରହିଥାଏ ।

ପରମାଣୁର ନିଉକ୍ଲିୟସ୍ଟି, ପରସ୍ପର ଘନିଷ୍ଠଭାବେ ସଂଲଗ୍ନ ପ୍ରୋଟନ୍ ଓ ନିୟୁଟ୍ରନ୍ ନାମକ କଣିକା ଦ୍ୱୟରେ ଗଠିତ । ପ୍ରୋଟନ୍‌ର ଯୁକ୍ତାତ୍ମକ ଚାର୍ଜ ଅଛି ଓ ଏହାର ପରିମାଣ ଇଲେକ୍ଟ୍ରନ୍‌ରେ ଥିବା ବିଯୁକ୍ତାତ୍ମକ ଚାର୍ଜ ସହିତ ସମାନ । ଗୋଟିଏ ପରମାଣୁରେ ଇଲେକ୍ଟ୍ରନ୍ ଓ ପ୍ରୋଟନ୍‌ର ସଂଖ୍ୟା ସମାନ । ଫଳରେ ପରମାଣୁରେ ଚାର୍ଜ ଶୂନ ବା ବୈଦ୍ୟୁତିକ ଚାର୍ଜ ନଥାଏ ।

ନିୟୁଟ୍ରନ୍‌ର ମଧ୍ୟ ବିଦ୍ୟୁତ୍ ଚାର୍ଜ ନଥାଏ । ଏହାର ଓଜନ ପ୍ରୋଟନ୍‌ର ଓଜନ ସହିତ ସମାନ ।



ନିଉକ୍ଲିୟସ୍ ଚାରିପଟେ ଇଲେକ୍ଟ୍ରନ ଘୂରିବା ଅନେକାଂଶରେ ସୂର୍ଯ୍ୟ ଚାରିପଟେ
ପୃଥିବୀ ଘୂରିଲା ପରି

ଗୋଟିଏ ମୌଳିକ ବସ୍ତୁର ଗୁଣାବଳୀ ଏହାର ପରମାଣୁରେ ଥିବା ଇଲେକ୍‌ଟ୍ରନ୍ ବା ପ୍ରୋଟନ୍‌ର ସଂଖ୍ୟା ଉପରେ ନିର୍ଭର କରେ । ନିୟୁଟ୍ରନ୍ କେବଳ ଏହାର ବସ୍ତୁତ୍ୱ ବଢ଼ାଇଥାଏ ମାତ୍ର । ଉଦ୍‌ଜାନର ପରମାଣୁରେ କେବଳ ଗୋଟିଏ ପ୍ରୋଟନ୍ ଥାଏ ।



ଲିଥିୟମ୍ ନିଉକ୍ଲିୟସ୍



ହିଲିୟମ୍ ନିଉକ୍ଲୟସ୍

ହିଲିୟମ୍ ପରମାଣୁ ଦୁଇଟି ଓ ଲିଥିୟମ୍ ପରମାଣୁ ତିନୋଟି ପ୍ରୋଟନ୍ ନେଇ ଗଠିତ ।

କେତେକ ମୌଳିକ ପଦାର୍ଥ କ୍ଷେତ୍ରରେ ସେମାନଙ୍କ ନିଉକ୍ଲିୟସ୍‌ରେ କେବଳ ନିୟୁଟ୍ରନ ସଂଖ୍ୟାରେ ତଫାତ୍ ଥାଏ । ଫଳରେ ସେଗୁଡ଼ିକଙ୍କର ବସ୍ତୁତ୍ୱ ଭିନ୍ନ ଭିନ୍ନ ।

ଏଗୁଡ଼ିକୁ ସେହି ମୌଳିକ ବସ୍ତୁର ଆଇସୋଟୋପ୍ କୁହାଯାଏ । ଉଦାହରଣ ସ୍ୱରୂପ ମୌଳିକ ଉଦଜାନର ପରମାଣୁ ଗୋଟିଏ ପ୍ରୋଟନ୍ ନେଇ ଗଠିତ । ସେଥିରେ ନିୟୁଟ୍ରନ୍ ନଥାଏ । କିନ୍ତୁ ଆଉ ଏକ ପ୍ରକାର ଉଦ୍‌ଜାନ ପରମାଣୁ ଅଛି ଯେଉଁଥିରେ




A ଡଇଟେରିଅମ୍ ପରମାଣୁ B. ଟ୍ରିଟିଅମ୍ ପରମାଣୁ C. ହାଇଡ୍ରୋଜେନ୍ ପରମାଣୁ

ଗୋଟାଏ ଲେଖାଏଁ ପ୍ରୋଟନ୍ ଓ ନିୟୁଟ୍ରନ୍ ଅଛନ୍ତି । ଏହା ଅବଶ୍ୟ ଖୁବ୍ ବିରଳ । ଏହି ଉଦ୍‌ଜାନର ନାମ ଡିଇଟେରିଅମ୍ । ତୃତୀୟ ପ୍ରକାରର ଉଦ୍‌ଜାନ ପରମାଣୁରେ ଗୋଟିଏ ପ୍ରୋଟନ୍ ଓ ଦୁଇଟି ନିୟୁଟ୍ରନ୍ ରହିଥାଏ । ଏହାର ନାମ ଟ୍ରିଟିଅମ୍, ଏହାକୁ କୃତ୍ରିମ ଉପାୟରେ ତିଆରି କରଯାଇଛି । ଏହି ତିନୋଟି ହେଲେ ଉଦ୍‌ଜାନର ଆଇସୋଟୋପ୍ ।

ଯେତେବେଳେ ସଠିକ୍‌ଭାବେ ଜଣାଗଲା ଯେ ପରମାଣୁ କେତେକ କଣିକାନେଇ ଗଠିତ ବୈଜ୍ଞାନିକମାନେ ପରମାଣୁକୁ ଭାଙ୍ଗିବା ପାଇଁ ଚିନ୍ତାକଲେ । ସେମାନେ ଦେଖିଲେ ପରମାଣୁ ଭିତରେ ନିୟୁକ୍ଲିୟସ୍‌ଠାରୁ ଦୂରରେ ଘୂରୁଥିବା ଇଲେକ୍‌ଟ୍ରନ୍ ଗୁଡ଼ିକୁ ସହଜରେ ପରମାଣୁ ଦେହରୁ ଅଲଗା କରିହେବ । ଆମେ ଜାଣିଛେ ଯେ ଖଣ୍ଡେ ରେଶମ୍ କନାକୁ କାଚଦଣ୍ଡରେ ଘଷିଲେ କେତେକ ଇଲେକ୍‌ଟ୍ରନ୍ କାଚର ପରମାଣୁରୁ ଅଲଗାହୋଇ କନାର ପରମାଣୁ ସହିତ ସଂଯୁକ୍ତ ହୋଇଯାଆନ୍ତି । ଫଳତଃ କନାଟି ବିଯୁକ୍ତାତ୍ମକ ଗ୍ରାର୍ଜ-ପାଏ । କେତୋଟି ଇଲେକ୍‌ଟ୍ରନ୍ ବାହାରି ଆସିବା କାରଣରୁ କାଚଦଣ୍ଡଟି ଯୁକ୍ତାତ୍ମକ ଗ୍ରାର୍ଜ ଲାଭକରେ ।

କିନ୍ତୁ ନିଉକ୍ଲିୟସ୍‌କୁ ଭାଙ୍ଗିବା ବୈଜ୍ଞାନିକମାନଙ୍କ ପକ୍ଷରେ କଷ୍ଟକର ହୋଇ-ପଡ଼ିଲା । ପ୍ରୋଟନ୍ ଓ ନିୟୁଟ୍ରନ୍ ପରସ୍ପର ସହ ଏତେ ଘନିଷ୍ଠଭାବରେ ଆବଦ୍ଧ ଯେ କୌଣସି ଉପାୟରେ ସେମାନଙ୍କୁ ପୃଥକ୍ କରିବା ସମ୍ଭବପର ଦେଖାଗଲା ନାହିଁ ।

ଏହି ସମୟରେ ମେରୀକ୍ୟୁରୀ ଓ ପିଅର କ୍ୟୁରୀ ରେଡ଼ିୟମ୍ ନାମକ ଏକ ନୂଆ ମୌଳିକ ପଦାର୍ଥ ଆବିଷ୍କାର କରିଥାଆନ୍ତି । ଏହି ଆବିଷ୍କାର ଏକ ନୂଆ ଜାତୀୟ କେତେକ ମୌଳିକ ପଦାର୍ଥକୁ ଆଲୋକକୁ ଆଣିଥିଲା । ଏହି ମୌଳିକ ପଦାର୍ଥ ଗୁଡ଼ିକର ଗୋଟିଏ ସାଧାରଣ ଗୁଣ ହେଉଛି ତେଜସ୍କ୍ରିୟତା । ଗୋଟିଏ ପଦାର୍ଥ ଯଦି କେତେକ ତରଙ୍ଗ ବା କଣିକା ବିକୀରଣ କରି ନିଜେ ଭାଙ୍ଗି ହୋଇଯାଏ ତେବେ ତାକୁ ତେଜସ୍କ୍ରିୟ କୁହାଯାଏ । ଏହି ନୂଆ ମୌଳିକ ପଦାର୍ଥ ଗୁଡ଼ିକର ଓଜନ ମଧ୍ୟ ଅନ୍ୟ ସମସ୍ତ ମୌଳିକ ପଦାର୍ଥଠାରୁ ବେଶୀ । ବିଶ୍ୱାସ କରଯାଏ ଯେ ଏହି ବସ୍ତୁଗୁଡ଼ିକର ଅତ୍ୟଧିକ ଓଜନ ଏମାନଙ୍କ ସ୍ୱ-ବିଭକ୍ତୀକରଣର ଏକ କାରଣ । ପ୍ରକୃତିରେ ମିଳୁଥିବା ମୌଳିକ ପଦାର୍ଥ ଗୁଡ଼ିକ ମଧ୍ୟରେ ସବୁଠାରୁ ଓଜନଦାର ମୌଳିକ ବସ୍ତୁ ୟୁରେନିୟମ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ ।

ରେଡ଼ିୟମ୍ ସ୍ୱ-ବିଭକ୍ତୀକରଣ ସମୟରେ ଦୁଇ ପ୍ରକାର କଣିକା ଓ ଗୋଟିଏ ପ୍ରକାର ରଶ୍ମି ବିକୀରଣ କରେ । କଣିକାଗୁଡ଼ିକୁ 'ଆଲ୍‌ଫା' ଓ 'ବିଟା' କଣିକା ବୋଲି

ନାଁ ଦିଆଯାଇଥିଲା । ଦେଖାଗଲା ବିଟା କଣିକାଗୁଡ଼ିକ ଇଲେକ୍‌ଟ୍ରନ୍ ଓ ଆଲ୍‌ଫା କଣିକା ଦୁଇଟି ପ୍ରୋଟନ୍ ଓ ଦୁଇଟି ନିୟୁଟ୍ରନ୍ ନେଇ ଗଠିତ । ହିଲିୟମ ନିଉକ୍ଲିୟସ୍ ରଶ୍ମିକୁ ଗାମାରଶ୍ମି କୁହାଯାଏ । ଏହି ଗାମାରଶ୍ମି ଅତ୍ୟନ୍ତ ଶକ୍ତିଶାଳୀ ।

ରେଡ଼ିୟମ୍‌ରୁ ବିଚ୍ଛୁରିତ କଣିକାସବୁ ଖୁବ୍ ପ୍ରଚଣ୍ଡ ବେଗରେ ଗତିକରିଥାନ୍ତି । ତେଣୁ ବୈଜ୍ଞାନିକମାନେ ଭାବିଲେ ଯେ ଏହି କଣିକା ଗୁଡ଼ିକଦ୍ୱାରା ପରମାଣୁର ନିୟୁକ୍ଲିୟସ୍‌କୁ ଭାଙ୍ଗି ଅଲଗା ଅଲଗା କରଯାଇ ପାରେ । 'ବିଟା' କଣିକା ଗୁଡ଼ିକ ଖୁବ୍ ହାଲୁକା ହୋଇଥିବାରୁ ଏହି କାମରେ ଲାଗିପାରିବେ ନାହିଁ । ଅନ୍ୟ ପକ୍ଷରେ ଆଲ୍‌ଫା କଣିକା ଖୁବ୍ ଓଜନିଆ ହେଲେ ବି ଗୋଟେ ଅସୁବିଧା ଥିଲା । ଅସୁବିଧାଟି ନିମ୍ନ ପ୍ରକାରର । ଆଲ୍‌ଫା କଣିକା ଗୁଡ଼ିକ ଯୁକ୍ତାମ୍ରକ ଚାର୍ଜବିଶିଷ୍ଟ । ପରମାଣୁର ନ୍ୟୁକ୍ଲିୟସ୍ ମଧ୍ୟ ଯୁକ୍ତାମ୍ରକ ଚାର୍ଜବିଶିଷ୍ଟ । ସ୍ଥିର-ବିଦ୍ୟୁତ୍ ଏକ ନିୟମ ଯେ ସମଚାର୍ଜ ପରସ୍ପରକୁ ବିକର୍ଷଣ କରନ୍ତି । ତେଣୁ ଆଲ୍‌ଫା କଣିକା ଓ ନିଉକ୍ଲିୟସ୍ ପରସ୍ପରକୁ ବିକର୍ଷଣ କରିବେ । କିନ୍ତୁ କେତେକ ଭାବିଲେ ଯେ ଆଲ୍‌ଫା କଣିକା ଗୁଡ଼ିକ ପ୍ରଚଣ୍ଡ ବେଗରେ ନିୟୁକ୍ଲିୟସ୍ ନିକଟକୁ ଆସୁଥିବାରୁ ସେଗୁଡ଼ିକୁ ସହଜରେ ଠେଲି ଦିଆଯାଇ ପାରିବ ନାହିଁ । ବୈଜ୍ଞାନିକମାନେ ଅଳ୍ପାଂଶରେ କୃତକାର୍ଯ୍ୟ ହେଲେ ; ନିୟୁକ୍ଲିୟସ୍‌ର ଖୁବ୍ ଛୋଟ ଅଂଶକୁ ଭାଙ୍ଗି ଅଲଗା କରିହେଲା ।

ଏହି ସମୟକୁ ଚାଡ଼ଉଇକ ନିୟୁଟ୍ରନ ଆବିଷ୍କାର କଲେ । ପୂର୍ବରୁ ବୈଜ୍ଞାନିକମାନେ ନିୟୁଟ୍ରନ୍‌ର ସ୍ଥିତି ବିଷୟରେ ଅଜ୍ଞଥିଲେ । ନିୟୁଟ୍ରନ୍‌ର କୌଣସି ବିଦ୍ୟୁତ୍ ଚାର୍ଜ ନଥିବାରୁ ଏହାକୁ ନିୟୁକ୍ଲିୟସ ଭାଙ୍ଗିବାପାଇଁ ବ୍ୟବହାର କରଯାଇପାରିବ ବୋଲି ସମସ୍ତେ ଭାବିଲେ । ଏନ୍‌ରିକୋ ଫର୍ମି ନାମକ ଜଣେ ଇଟାଲୀୟ ବୈଜ୍ଞାନିକ ମୌଳିକ ପଦାର୍ଥ ଗୁଡ଼ିକର ନିୟୁକ୍ଲିୟସ୍ ଗୁଡ଼ିକୁ ଥରେ ଖୁବ୍ ବେଗଗାମୀ ଓ ଥରେ ଖୁବ୍ ଧୀର ବେଗରେ ଗତିକରୁଥିବା ନିୟୁଟ୍ରନ୍ ଦ୍ୱାରା ଆଘାତକଲେ । ସେ ମଧ୍ୟ କେତେକାଂଶରେ ସଫଳ ହୋଇଥିଲେ । ତାପରେ ଦ୍ୱିତୀୟ ମହାଯୁଦ୍ଧର ଆରମ୍ଭ ହେଲା । ଫଳରେ ଫର୍ମି ଆମେରିକା ଚାଲିଯିବା ପାଇଁ ବାଧ୍ୟ ହୋଇଥିଲେ ।

ଏହି ସମୟରେ କେତେକ ଜର୍ମାନ ବୈଜ୍ଞାନିକ ଏକ ଅଦ୍ଭୁତ ଆବିଷ୍କାର କରିଥିଲେ । ସେମାନେ ଦେଖିଲେ ଯେ ୟୁରେନିୟମ୍ ନିୟୁକ୍ଲିୟସ୍‌କୁ ନିୟୁଟ୍ରନ୍‌ଦ୍ୱାରା

ଆଘାତ ଦେଲେ ନିୟୁକ୍ଲିୟସ୍‌ଟି ଦୁଇ ସମାନ ଅଂଶରେ ବିଭକ୍ତ ହେବା ସଙ୍ଗେ ସଙ୍ଗେ ପ୍ରଚଣ୍ଡ ଶକ୍ତି ବିକୀରଣ କରୁଛି ।

ୟୁରାନିୟମ୍ ପ୍ରକୃତିରେ ଦୁଇଟି ଆଇସୋଟୋପ୍ ଭାବରେ ମିଳିଥାଏ, ଯଥା– ୟୁ-୨୩୮ ଓ ୟୁ-୨୩୫ । ଏହି ଦୁଇଟି ମିଶିକରି ଥାଆନ୍ତି । ପ୍ରକୃତିସ୍ଥ ମିଳୁଥିବା ୟୁରାନିୟମରେ ୟୁ-୨୩୫ର ଭାଗ ଏକ ଶତାଂଶରୁ ମଧ୍ୟ କମ୍ । ଧୀରଗାମୀ ନିୟୁଟ୍ରନ୍ ଦ୍ୱାରା ୟୁରାନିୟମର ନିଉକ୍ଲିୟସ୍‌କୁ ଆଘାତ କଲେ ଏହି ୟୁ-୨୩୫ ଅଲଗା ହୋଇଯାଏ ।



ଆଲ୍‌ବର୍ଟ ଆଇନଷ୍ଟାଇନ୍

ଏହି ବିଭାଜୀକରଣ ସମୟରେ ପ୍ରଚଣ୍ଡ ଶକ୍ତି ନିର୍ଗତ ହୁଏ ଓ କେତେକ ନିୟୁଟ୍ରନ୍ ମୁକ୍ତ ହୋଇଯାଆନ୍ତି । ଆଶା କରାଗଲା ଯେ ଏହି ନିୟୁଟ୍ରନ୍‌ଗୁଡ଼ିକୁ ବ୍ୟବହାର କରି ପୁଣି ୟୁ-୨-୩୫ ନିୟୁକ୍ଲିୟସ୍‌କୁ ଆଘାତ କରି ଭାଙ୍ଗିଦିଆଯାଇ ପାରିବ । ଏହିପରି ଯଦି ବାରମ୍ବାର କରାଯାଇ ପାରେ ତେବେ ତାକୁ ଚେନ୍ ରିଆକ୍‌ସନ ବା ଶୃଙ୍ଖଳା ପ୍ରକ୍ରିୟା କୁହାଯାଏ । ପରମାଣୁ ବୋମା ବିସ୍ଫୋରଣରେ ଏହି ପ୍ରକ୍ରିୟା ସଂଘଟିତ ହୋଇଥାଏ ।

କିନ୍ତୁ ୟୁ-୨୩୮ର ଗୁଣାବଳୀ ସଂପୂର୍ଣ୍ଣ ଭିନ୍ନ । ଏହାର ନିୟୁକ୍ଲିୟସ୍‌କୁ ନିୟୁଟ୍ରନ୍‌ଦ୍ୱାରା ଆଘାତ କଲେ ଏହା ନିୟୁଟ୍ରନକୁ ଅବଶୋଷଣ କରିନିଏ । ଫଳରେ ଶୃଙ୍ଖଳ ପ୍ରକ୍ରିୟା ସଂଘଟିତ ହୁଏ ନାହିଁ ।

ବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ୍ ଆମେରିକାରେ ଥିବାବେଳେ ତାଙ୍କୁ ଏହି ସବୁ ଘଟଣା ଜଣାଇ ଦିଆଗଲା । ସେ ଦେଖିଲେ ଏହି ଆବିଷ୍କାରଦ୍ୱାରା ମାରାତ୍ମକ ପରମାଣୁ ବୋମା ତିଆରି ସମ୍ଭବ ହୋଇପାରିବ । ଏହା ସେ ଆମେରିକାର ରାଷ୍ଟ୍ରପତିଙ୍କୁ ମଧ୍ୟ ଜଣାଇଲେ । ରାଷ୍ଟ୍ରପତି ଏହି ବୋମା ତିଆରି କାମ ଆରମ୍ଭ କରିବାକୁ ନିର୍ଦ୍ଦେଶ ଦେଲେ ।

ତଥାପି ପରମାଣୁ ବୋମା ତିଆରି ବାଟରେ ଦୁଇଟି ପ୍ରତିବନ୍ଧକ ରହିଲା । ପ୍ରଥମଟି ହେଉଛି ଶୃଙ୍ଖଳ ପ୍ରକ୍ରିୟା ସଂଘଟନ ସମ୍ବନ୍ଧରେ ସ୍ଥିର ନିଶ୍ଚିତ ହେବ । ଦ୍ୱିତୀୟଟି ହେଲା ବୋମା ତିଆରି ପାଇଁ ପ୍ରାକୃତିକ ୟୁରାନିୟମ୍‌ରୁ ଯଥେଷ୍ଟ ପରିମାଣର ୟୁ-୨୩୫ ଅଲଗା କରିବା ।

ପରମାଣୁ ବୋମା ତିଆରି କାମ ଆରମ୍ଭ ହେଲା ୧୯୪୦ରୁ । ଶୃଙ୍ଖଳ ପ୍ରକ୍ରିୟାର ପରୀକ୍ଷାପାଇଁ ଦଳେ ବୈଜ୍ଞାନିକଙ୍କୁ ନିଯୁକ୍ତ କରାଗଲା । ଏଥିରେ ମୁଖ୍ୟ ହେଲେ ଏନ୍‌ରିକୋ ଫର୍ମି । ଏହି ପରୀକ୍ଷାଟି ୧୯୪୨, ଡିସେମ୍ବର ୨ ତାରିଖରେ ସଫଳତାର ସହିତ ଶେଷ ହେଲା ।

ନୂତନ ଆବିଷ୍କାର ଫଳରେ ସାଧାରଣତଃ ଯାହାହୁଏ, ଏଠି ମଧ୍ୟ ପରମାଣୁ ଶକ୍ତିର ଆବିଷ୍କାର କେବଳ ପରମାଣୁ ବୋମା ତିଆରିରେ ଆବଦ୍ଧ ରହିଲା ନାହିଁ । ଏହାଠାରୁ ଆହୁରି ଭୟଙ୍କର ବୋମା ତିଆରି ହେଲା । ଉଦ୍‌ଜାନ ବୋମା ପରମାଣୁ ବୋମାଠାରୁ ଏକ ହଜାରଗୁଣ ଅଧିକ ଶକ୍ତିଶାଳୀ । ଏହା ଏକ ଓଜନିଆ ନିୟୁକ୍ଲିୟସ୍‌ର ବିଭଜନ ପରିବର୍ତ୍ତେ ହାଲୁକା ପରମାଣୁର କେତୋଟି ନିୟୁକ୍ଲିୟସ୍‌ର ସଂଯୋଜନଦ୍ୱାରା ଏକ ଓଜନିଆ ପରମାଣୁର ଗଠନ ପ୍ରକ୍ରିୟାକୁ ନେଇ ଗଠିତ । ଏହାଠାରୁ କୋବାଲ୍‌ଟ୍ ବମ୍ ଆହୁରି ଭୟଙ୍କର । ଏସବୁଗୁଡ଼ିକୁ ନିୟୁକ୍ଲିୟର୍ ବମ୍ କୁହାଯାଏ, କାରଣ ପ୍ରତ୍ୟେକ କ୍ଷେତ୍ରରେ ପରମାଣୁର ନିୟୁକ୍ଲିୟସ୍‌ର ସଞ୍ଚିତ ଶକ୍ତି ହିଁ ବିମୋଚିତ ହୋଇଥାଏ ।

ନିୟୁକ୍ଲିୟର୍ ବମ୍‌ର ଉଦ୍ଭାବନ ଯୁଦ୍ଧସମ୍ବନ୍ଧୀୟ ଧାରଣାକୁ ପୂରା ବଦଳାଇ ଦେଇଛି । ବର୍ଷ ବର୍ଷ ଧରି ଯୁଦ୍ଧ ଚାଲୁଥିବା ଦିନ ଆଜି ଆଉ ନାହିଁ । ଗୋଟିଏ ନିୟୁକ୍ଲିୟର ବମ୍ ଗୋଟିଏ ନଗରୀକୁ ପୂରା ନିଶ୍ଚିହ୍ନ କରିଦେଇ ପାରେ । ଆଜି ସୁଇଚ୍ ଟିପିବାମାତ୍ରେ ନିୟୁକ୍ଲିୟର୍ ଯୁଦ୍ଧାସ୍ତ୍ର ଖଞ୍ଜା ହୋଇଥିବା କ୍ଷେପଣାସ୍ତ୍ର ବହୁତ ଦୂର ଲକ୍ଷ୍ୟସ୍ଥଳରେ ପହଞ୍ଚି ଧ୍ୱଂସ ସାଧନ କରିପାରୁଛି । ଯଦି କୌଣସି ଯୁଦ୍ଧରେ ଦୁଇପକ୍ଷ ନିୟୁକ୍ଲିୟର୍ ଯୁଦ୍ଧାସ୍ତ୍ର ବ୍ୟବହାର କରନ୍ତି ତେବେ ସେମାନଙ୍କର କ୍ଷୟକ୍ଷତି କଳନା କରିବା କଷ୍ଟସାଧ୍ୟ । ସେଥିଲାଗି ଆଜି ମଣିଷ ମନରେ ସ୍ୱତଃ ପ୍ରଶ୍ନ ହୁଏ ଯେ ନିୟୁକ୍ଲିୟର ଯୁଦ୍ଧରେ ବ୍ୟାପୃତ ହୋଇ ଦିନେ ପୃଥିବୀପୃଷ୍ଠରୁ ସବୁ ଜୀବନ ଲୋପପାଇ ଯିବ ନାହିଁ ତ !

ପରମାଣୁ ଶକ୍ତି ମଣିଷ ହାତରେ ନାହିଁ ନ ଥିବା କ୍ଷୟକାରୀ ଶକ୍ତି ଦେବା ସଙ୍ଗେ ସଙ୍ଗେ ଭବିଷ୍ୟତ ପାଇଁ ଉଜ୍ଜ୍ୱଳ ଆଶା ମଧ୍ୟ ଦେଇଛି । ଆମେ ଏତେ ବହୁଳ ଭାବରେ କୋଇଲା, ତେଲ ଇତ୍ୟାଦି ଶକ୍ତିର ଉତ୍ସଗୁଡ଼ିକୁ ବ୍ୟବହାର କରୁଛୁ ଯେ ଅନୁମାନ କରାଯାଏ ଦିନେ ଏସବୁ ନିଶ୍ଚୟ ସରିଯିବ । ପୃଥିବୀ ପୃଷ୍ଠର ମଣିଷର ଜୀବନଧାରଣ ମୂଳରେ ଶକ୍ତିର ଅବଦାନ ନିହିତ । ପୁଣି ସଭ୍ୟତାର ଅଗ୍ରଗତି ସହିତ ଶକ୍ତିର ବ୍ୟବହାର ବୃଦ୍ଧି ପାଉଛି । ଏଥିପାଇଁ ମଣିଷ ସବୁବେଳେ ଶକ୍ତିର ଆଉ ଏକ ଉତ୍ସ ଖୋଜି ଆସିଛି ।



ପରମାଣୁ ଶକ୍ତିର ଶାନ୍ତିପୂର୍ଣ୍ଣ ବ୍ୟବହାର

ଶେଷରେ ସେ ପାଇଛି ପରମାଣୁ ଶକ୍ତି । ନିୟୁକ୍ଲିୟସ୍‌ରେ ଗଚ୍ଛିତଥିବା ଶକ୍ତି ଦ୍ୱାରା ଗୋଟିଏ ବିସ୍ଫୋରଣରେ ସବୁ ଧ୍ୱଂସ କରିଦେବା ପରମ ମୂର୍ଖତା । ଏହାକୁ ଆୟତ୍ତାଧୀନ କରି ମାନବଜାତିର ଉପକାରରେ ବିନିଯୋଗ କରାଯାଇ ପାରେ, ଏଥିପାଇଁ ନିୟୁକ୍ଲିୟର୍ ରିଆକ୍ଟର୍‌ର ପ୍ରୟୋଜନ ହୁଏ । ସାରା ପୃଥିବୀରେ ଅନେକ ରିଆକ୍ଟର ଖୋଲୁହେଲାଣି । ହୁଏତ ସମୟକ୍ରମେ ଏଗୁଡ଼ିକ ହିଁ ଶକ୍ତିର ଏକମାତ୍ର ଉତ୍ସ ହୋଇ ରହିବ । ତେଣୁ କାଠ, କୋଇଲା, ତେଲ ସବୁ ଶେଷ ହୋଇଗଲେ ମଧ୍ୟ ମଣିଷ ସଭ୍ୟତା ଭାଙ୍ଗିଯିବ ନାହିଁ । କି ବିରାଟ ପରିକଳ୍ପନା ସତେ !

ନିୟୁକ୍ଲିୟର ରିଆକ୍ଟରଦ୍ୱାରା ଅନେକ ଆଶ୍ଚର୍ଯ୍ୟଜନକ କାମ ହୋଇପାରୁଛି । ଏଗୁଡ଼ିକଦ୍ୱାରା ଜାହାଜ, ବୁଡ଼ାଜାହାଜ ଇତ୍ୟାଦିକୁ ଶକ୍ତି ଯୋଗାଇ ଦିଆଯାଇ ପାରୁଛି ଓ ନିୟୁକ୍ଲିୟର୍ ପାଓ୍ୱାର ଷ୍ଟେସନରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦିତ ହେଉଛି । ପରମାଣୁ ଶକ୍ତିର ଏକ ବିଶେଷତ୍ୱ ଯେ ଖୁବ ଛୋଟ ଜାଗାରେ ଅତିରିକ୍ତ ପରିମାଣର ଶକ୍ତି ବହନ କରିହେବ ଓ ଏହା ବହୁ ସମୟ ଧରି କାମ କରିବ । ୧୯୫୮ରେ "ନଟିଲସ୍" ନାମକ ବୁଡ଼ାଜାହାଜ ଉତ୍ତରମେରୁର ବରଫ ଭିତର ଦେଇ ପ୍ରଶାନ୍ତ ମହାସାଗରଠାରୁ ଆଟଲାଣ୍ଟିକ୍ ମହାସାଗର ପର୍ଯ୍ୟନ୍ତ କେବଳ ଗୋଟିଏ ନିୟୁକ୍ଲିୟର୍ ଜାଳେଣି ନେଇ ଗତି କରିପାରିଥିଲା । ମହାକାଶ ଯାତ୍ରା ପାଇଁ ମଧ୍ୟ ନିୟୁକ୍ଲିୟର ଶକ୍ତି ବିଶେଷ ଉପଯୋଗୀ । ଭବିଷ୍ୟତରେ ଯଦି ମଣିଷ ଚନ୍ଦ୍ରପୃଷ୍ଠରେ ବସତି ସ୍ଥାପନ କରେ ତେବେ ସେଠାରେ ପରମାଣୁ ଶକ୍ତି ହିଁ ହେବ ଶକ୍ତିର ଏକମାତ୍ର ଉତ୍ସ ।

ପ୍ରତିଦିନ ପରମାଣୁ ଶକ୍ତିର ନୂଆ ନୂଆ ବ୍ୟବହାର ବିଷୟରେ ଚିନ୍ତା କରା-ଯାଉଛି । ନିୟୁକ୍ଲିୟର ଯୁଗରେ ଯେଉଁ ପରିବର୍ତ୍ତନ ଦେଖାଦେଇଛି, ସେ ସବୁ ପରମାଣୁବୋମାର ଉଦ୍ଭାବନରୁ ଆରମ୍ଭ କହିଲେ ଚଳେ । ପରମାଣୁ ଶକ୍ତିର କେତେ ଆଶ୍ଚର୍ଯ୍ୟକର କ୍ଷମତାର ଉପଯୋଗ ଆମେ କଲୁଣି ଓ ଭବିଷ୍ୟତରେ ଆହୁରି ଅନେକ କରାଯାଇ ପାରିବ ବୋଲି ଆଶା ।



## ଇଲେକ୍ଟ୍ରନିକ୍ସ

ପ୍ରକୃତରେ ଦେଖିବାକୁ ଗଲେ ଇଲେକ୍‌ଟ୍ରନିକ୍‌ସର ଉଦ୍ଭାବନ ଓ ବ୍ୟବହାର ବହୁତ୍ ଦିନ ତଳର ଘଟଣା । ସେ ସମୟକୁ ପରମାଣୁ ବୋମାର ଚିନ୍ତା ମଧ୍ୟ ମଣିଷ କରି ନ ଥିଲ । କିନ୍ତୁ ଏହି ନିକଟ ଅତୀତରେ ଇଲେକ୍‌ଟ୍ରନିକ୍‌ସର ପ୍ରଗତି ଏତେ ଦ୍ରୁତ ହୋଇଛି ଯେ ଜଣାଯାଏ ଯେପରି ଏହାର ଉଦ୍ଭାବନ ବିଜ୍ଞାନଜଗତରେ ଖୁବ୍ ଅଳ୍ପ ଦିନ ତଳର କଥା । ଆଜି ଇଲେକ୍‌ଟ୍ରନିକ୍‌ସ ବିଜ୍ଞାନର ବହୁଳ ବ୍ୟବହାର ଶାଖାମାନଙ୍କ ମଧ୍ୟରେ ଅନ୍ୟତମ । ଏହା ଏକ ଉନ୍ନତ ଶିଳ୍ପ ମଧ୍ୟ ।

ଇଲେକ୍‌ଟ୍ରନିକ୍‌ସ କ'ଣ ବୁଝିବାକୁ ହେଲେ ଆମକୁ ପ୍ରଥମେ ବୁଝିବା ଦରକାର ବିଦ୍ୟୁତ୍‌ସ୍ରୋତର ପ୍ରବାହ ସମୟରେ ତାର ଭିତରେ କ'ଣ ପରିବର୍ତ୍ତନ ହୁଏ । ଆମେ ଜାଣିଛେ ତାରଟି ଯେଉଁ ଧାତୁର, ତାହା ଘନିଷ୍ଠଭାବେ ପରସ୍ପର ସହିତ ଆବଦ୍ଧ ପରମାଣୁ ଗୁଡ଼ିକୁ ନେଇ ଗଠିତ । ଆହୁରି ଆମେ ଜାଣିଛେ ଯେ ପ୍ରତ୍ୟେକ ପରମାଣୁ ମଝିରେ ଗୋଟିଏ ନିୟୁକ୍ଲିୟସ୍ ରହିଛି ଓ ଏହି ନିୟୁକ୍ଲିୟସ୍ ଚାରିପଟେ ଅନେକ ଇଲେକ୍‌ଟ୍ରନ୍ ଖୁବ୍ କ୍ଷିପ୍ର ଗତିରେ ଘୂରି ବୁଲୁଛନ୍ତି ।

ଯେତେବେଳେ ତାର ଦେଇ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହେଉଛି ବୋଲି ଆମେ କହୁ ସେତେବେଳେ ଏହି ଇଲେକ୍‌ଟ୍ରନ୍ ମଧ୍ୟରୁ କେତେକ ଏକ ଅପରିବର୍ତ୍ତୀ ସ୍ରୋତ ପରି ତାରର ଗୋଟିଏ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଗତି କରୁଛନ୍ତି ବୋଲି ଆମେ ବୁଝୁ । ଏହି ଇଲେକ୍‌ଟ୍ରନ୍ ସ୍ରୋତକୁ ଏକ ନିରବଚ୍ଛିନ୍ନ ପରିପଥ ବା ସର୍କିଟ ଦେଇ ଗତିକରାଇ ହିଟର, ଲାଇଟ୍ ଓ ଅନ୍ୟାନ୍ୟ ବୈଦ୍ୟୁତିକ ଯନ୍ତ୍ରପାତିକୁ କାମରେ ଲଗାଯାଏ ।

ପ୍ରଶ୍ନ ଉଠିପାରେ ଯେ ପରିପଥ ମଝିରେ ଛିନ୍ନ ହୋଇଗଲେ କ'ଣ ହୁଏ ? ଦେଖାଯାଏ ଯେ ପରିପଥରେ ସୃଷ୍ଟି ହୋଇଥିବା ଫାଙ୍କ ଯଦି ଖୁବ୍ ସଂକୀର୍ଣ୍ଣ ତେବେ ଗତିଶୀଳ ଇଲେକ୍‌ଟ୍ରନ୍ ଏହାକୁ ଡେଇଁଯିବାକୁ ଚେଷ୍ଟା କରନ୍ତି । ଫଳରେ ସ୍ଫୁଲିଙ୍ଗର ସୃଷ୍ଟି ହୁଏ । କିନ୍ତୁ ଯଦି ଏହି ଫାଙ୍କର ଓସାର ବେଶୀ ହୁଏ ତେବେ ଇଲେକ୍‌ଟ୍ରନ୍‌ଗୁଡ଼ିକ ଆଉ ଡେଇଁ ପାରନ୍ତି ନାହିଁ । ତେଣୁ ସ୍ରୋତ ବନ୍ଦ ହୋଇଯାଏ ।

ଉଦାହରଣସ୍ୱରୂପ ବିଜୁଳି ଆଲୁଅ କଥା ବିଚାର କରଯାଉ । ଇଲେକ୍‌ଟ୍ରିକ୍ ବଲ୍‌ବ ଭିତରେ ଖଣ୍ଡେ ସରୁତାର କୁଣ୍ଡଳୀ ଆକାରରେ ଖଞ୍ଜା ହୋଇଥାଏ । ଏହାକୁ ଫିଲମେଣ୍ଟ କୁହାଯାଏ । ବିଦ୍ୟୁତ୍‌ସ୍ରୋତର ପ୍ରବାହ ଫଳରେ ଏହି ତାରଟି ଏତେ ଉତ୍ତପ୍ତ ହୋଇଯାଏ ଯେ ଆଲୋକ ବିକୀରଣ କରେ । କିନ୍ତୁ ଯଦି ଫିଲମେଣ୍ଟଟି କେଉଁଠି ଭାଙ୍ଗିଯାଏ ତେବେ ଏହାଦେଇ ଆଉ ବିଦ୍ୟୁତ୍‌ସ୍ରୋତ ଯାଇପାରେ ନାହିଁ । ଫଳରେ ଆଉ ଆଲୋକ ବିକୀରଣ କରିପାରେ ନାହିଁ । ଏହାକୁ ଆମେ କହୁ ବଲ୍‌ବଟି ଫ୍ୟୁଜ୍ ହୋଇଯାଇଛି । ତାପରେ ନୂଆ ବଲ୍‌ବ ଆଣିବା ଦରକାର ପଡ଼େ ।

ଏହି ବିଦ୍ୟୁତ୍ ଆଲୋକର ଉଦ୍ଭାବକ ହେଉଛନ୍ତି ଟମାସ୍ ଆଲ୍‌ଭା ଏଡ଼ିସନ୍ (୧୮୪୭–୧୯୩୧) । ସେ ଅନେକ ବିଫଳ ଚେଷ୍ଟା ପରେ ଏହାକୁ କରିବାକୁ ସମର୍ଥ ହୋଇଥିଲେ । ୧୮୮୩ରେ ସେ ଆଉ ଏକ ବିଶେଷ ଧରଣର ବଲ୍‌ବ ତିଆରି

କରିଥିଲେ । ସେଥିରେ ସେ ବଲ୍‌ବ ଭିତରେ ଫିଲାମେଣ୍ଟଠାରୁ ଅଳ୍ପ ଦୂରରେ ଗୋଟିଏ ଧାତୁର ଫଳକ ରଖିଥିଲେ । ଏହି ଧାତୁର ଫଳକକୁ ଯୁକ୍ତାତ୍ମକ ଚାର୍ଜ଼ଦେଲେ ଫିଲାମେଣ୍ଟ ଦେଇ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହୁଏ । କିନ୍ତୁ ବିଯୁକ୍ତାତ୍ମକ ଚାର୍ଜ ଦେଲେ ବିଦ୍ୟୁତ୍‌ସ୍ରୋତ ବନ୍ଦ ହୋଇଯାଏ ।




ଏଡ଼ିସନ୍ ଏହି ଘଟଣାକୁ ବୁଝି ନଥିଲେ କି ବୁଝିବାକୁ ଚେଷ୍ଟା କରି ନଥିଲେ । ସେ ଆହୁରି ଉନ୍ନତ ଧରଣର ଆଲୋକ ବଲ୍‌ବ ତିଆରି କରିବାରେ ବ୍ୟସ୍ତ ଥିଲେ । ତେଣୁ ଅନ୍ୟଆଡ଼େ ସେ ମୁଣ୍ଡ ଖେଳାଉ ନ ଥିଲେ । ତଥାପି ସେ ଯାହା ଦେଖିଲେ ତା'ର ଏକ ଟିପ୍ପଣୀ ପ୍ରସ୍ତୁତ କରିଥିଲେ । କାରଣ ସେ ଭାବିଲେ ହୁଏତ ଏହା ପରେ ଦରକାରରେ

ଆସିପାରେ । ତାପରେ ବଲ୍‌ବଟିକୁ ଟେବୁଲ ତ୍ର ମଧ୍ୟରେ ରଖିଦେଇ ଏ ବିଷୟରେ ଭୁଲି ଯାଇଥିଲେ ।

ତାଙ୍କ ପରେ ତାଙ୍କର ଏହି ଉଦ୍ଭାବନକୁ "ଏଡ଼ିସନ୍ ଏଫେକ୍ଟ"ବୋଲି କୁହାଗଲା । ଏହାକୁ ବୁଝିବାପାଇଁ ଇଲେକ୍‌ଟ୍ରନ୍‌ର ବ୍ୟବହାର ସମ୍ବନ୍ଧୀୟ ଜ୍ଞାନ ଦରକାର ପଡ଼େ । ସାଧାରଣତଃ ଇଲେକ୍‌ଟ୍ରନ୍‌ଗୁଡ଼ିକ ପରମାଣୁ ସହିତ ଦୃଢ଼ ଭାବରେ ଆବଦ୍ଧ । ତେଣୁ ସ୍ୱାଭାବିକ ତାପକ୍ରମରେ କେବଳ ଅଳ୍ପ କେତୋଟି ଇଲେକ୍‌ଟ୍ରନ୍ ପରମାଣୁ ଦେହରୁ ବିଚ୍ଛିନ୍ନ ହୋଇ ପାରନ୍ତି । କିନ୍ତୁ ତାପମାତ୍ରା ଅତ୍ୟଧିକ ହେଲେ ଅନେକ ଇଲେକ୍‌ଟ୍ରନ୍ ମୁକ୍ତ ହୋଇଯାଆନ୍ତି । ଉତ୍ତପ୍ତ ତାରଖଣ୍ଡରୁ ଇଲେକ୍‌ଟ୍ରନ୍ ଉତ୍ସର୍ଜନ (emission)କୁ ତାପାୟନିକ ଉତ୍ସର୍ଜନ କୁହାଯାଏ । ଏଡ଼ିସନ୍‌ଙ୍କ ବଲ୍‌ବ ମଧ୍ୟରେ ଥିବା ଫଳକଟି ଯଦି ଯୁକ୍ତାତ୍ମକ ଗୁଣବିଶିଷ୍ଟ ହୁଏ ତେବେ ଏହା ଉତ୍ତପ୍ତ ଫିଲାମେଣ୍ଟରୁ ଉତ୍ସର୍ଜିତ ଇଲେକ୍‌ଟ୍ରନ୍ ଗୁଡ଼ିକୁ ଆକର୍ଷଣ କରେ । କିନ୍ତୁ ଫଳକଟି ବିଯୁକ୍ତାତ୍ମକ ଗୁଣବିଶିଷ୍ଟ ହେଲେ ଏହା ଇଲେକ୍‌ଟ୍ରନ୍‌ଗୁଡ଼ିକୁ ବିକର୍ଷଣ କରେ ଓ ଫଳରେ ବିଦ୍ୟୁତ୍‌ପ୍ରବାହ ବନ୍ଦ ହୋଇଯାଏ ।

ଏହିପରି ଭାବରେ ଏଡ଼ିସନ୍ ପ୍ରଥମକରି ଦେଖାଇଥିଲେ ଯେ ଗୋଟିଏ ଯୁକ୍ତାତ୍ମକ ଗୁଣବିଶିଷ୍ଟ ଧାତୁର ଫଳକ ଓ ଫିଲାମେଣ୍ଟ ମଧ୍ୟରେ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହୋଇ ପାରିବ ।

ଏହାର କିଛି ବର୍ଷ ପରେ ଜନ୍ ଆମ୍ବ୍ରୋଜ୍ ଫ୍ଲେମିଙ୍ଗ୍ ନାମକ ଜଣେ ଇଂରେଜ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟର୍ ଏହି ବଲ୍‌ବର ଉନ୍ନତି କରିବାକୁ ଯାଇ thermionic ବା ତାପାୟନିକ ଭାଲ୍‌ଭ ତିଆରି କରିଥିଲେ । ଭାଲ୍‌ଭ ହେଉଛି ଏକ ଯାନ୍ତ୍ରିକ ବ୍ୟବସ୍ଥା ଯାହାକି ତରଳ, ଗ୍ୟାସ୍ ବା ବିଦ୍ୟୁତ୍‌ସ୍ରୋତ ଇତ୍ୟାଦିକୁ କେବଳ ଏକ ନିର୍ଦ୍ଦିଷ୍ଟ ଦିଗରେ ପ୍ରବାହିତ ହେବାକୁ ଦିଏ । ଅଥଚ ଏହାର ବିପରୀତ ଦିଗରେ ପ୍ରବାହିତ ହେବାପାଇଁ ବାଟ ବନ୍ଦ କରିଦିଏ । ଏହି ତାପାୟନିକ ଭାଲ୍‌ଭ ବା ଟ୍ୟୁବ୍‌କୁ ଏକ ରେକ୍‌ଟିଫାୟାର ହିସାବରେ ବ୍ୟବହୃତ କରାଗଲା । ରେକ୍‌ଟିଫାୟାର୍ ପ୍ରତ୍ୟାବର୍ତ୍ତୀ ବିଦ୍ୟୁତ୍‌ସ୍ରୋତକୁ ସରଳ ସ୍ରୋତ ବା ଡାଇରେକ୍ଟ କରେଣ୍ଟରେ ପରିଣତ କରେ । ଯେଉଁ ସ୍ରୋତ ଗୋଟିଏ ସେକେଣ୍ଡ ଭିତରେ ଅନେକ ଥର ନିଜର ଦିଗ ପରିବର୍ତ୍ତନ କରେ ତାକୁ ଅଲଟରନେଟିଙ୍ଗ୍ କରେଣ୍ଟ ବା ପ୍ରତ୍ୟାବର୍ତ୍ତୀ ସ୍ରୋତ କୁହାଯାଏ । ତେଣୁ ଏହି ସ୍ରୋତକୁ କୌଣସି ପ୍ଲେଟ ସହ ସଂଯୁକ୍ତ କଲେ ପ୍ଲେଟ୍‌ଟି ବିକଳ୍ପ ଭାବରେ ଯୁକ୍ତାତ୍ମକ ଓ

ବିଯୁକ୍ତାତ୍ମକ ଗୁର୍ଜ ପାଇଥାଏ । କିନ୍ତୁ ତାପାୟନିକ ଭଲ୍‌ଭ ବ୍ୟବହାର କରଗଲେ ପ୍ଲେଟ୍‌ଟି କେବଳ ଯୁକ୍ତାତ୍ମକ ଗୁର୍ଜଯୁକ୍ତ ହେଲେ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହୁଏ ଓ ବିଯୁକ୍ତାତ୍ମକ-ଗୁର୍ଜବିଶିଷ୍ଟ ହେଲେ ବିଦ୍ୟୁତ୍‌ସ୍ରୋତ ପ୍ରବାହ ବନ୍ଦ ହୋଇଯାଏ । ଫଳରେ ସର୍ବଦା ଏକ ଦିଗାଭିମୁଖୀ ବିଦ୍ୟୁତ୍‌ପ୍ରବାହ ମିଳିଥାଏ ।

୧୯୦୭ରେ ଲି: ଡ଼ି: ଫରେଷ୍ଟ ନାମକ ଜଣେ ଆମେରିକୀୟ ଉଦ୍ଭାବକ ଏହି ତାପାୟନିକ ଟ୍ୟୁବ୍‌ର ଉନ୍ନତି କରିଥିଲେ । ସେ ଫିଲାମେଣ୍ଟ ଓ ପ୍ଲେଟ୍ ମଝିରେ ଖଣ୍ଡେ ତାର ଜାଲି ରଖିଥିଲେ । ଏହି ଜାଲି ଫିଲାମେଣ୍ଟ ବା ପ୍ଲେଟ୍‌କୁ ସ୍ପର୍ଶ କରୁ ନ ଥିଲା । ବର୍ତ୍ତମାନ ଟ୍ୟୁବ୍‌ଟି ଆମ୍ପ୍ଲିଫାୟାର୍‌ଭଳି କାମ କରି ପାରିଲା । ସେ ଏହାକୁ "ଅଡ଼ିଅନ" ନାମ ଦେଇଥିଲେ । ଏହାକୁ ଟ୍ରାଇଓଡ୍ ମଧ୍ୟ କୁହାଯାଏ ।

ତେଣୁ ବର୍ତ୍ତମାନ ରେଡ଼ିଓପାଇଁ ସବୁ ପ୍ରକାର ପ୍ରାରମ୍ଭିକ ବ୍ୟବସ୍ଥା ସମ୍ପୂର୍ଣ୍ଣ ହୋଇଗଲା ।





୧୮୮୮ରେ ଜର୍ମାନ୍ ବୈଜ୍ଞାନିକ ହେନ୍‌ରିଚ୍ ହର୍ଜ ଦେଖାଇଲେ ଯେ ବିଦ୍ୟୁତ୍ ଓ ଚୁମ୍ବକୀୟ ବଳ ଗୋଟିଏ ପଦାର୍ଥରୁ ଅନ୍ୟ ପଦାର୍ଥକୁ, ବିଦ୍ୟୁତ୍-ଚୁମ୍ବକୀୟ ତରଙ୍ଗ ବା ବେତାର ତରଙ୍ଗ ମାଧ୍ୟମରେ ଗତି କରିପାରେ ।

ରେଡ଼ିଓ-ଟ୍ରାନ୍‌ସମିଟର ଶବ୍ଦକୁ ବିଦ୍ୟୁତ୍ ଚୁମ୍ବକୀୟ ତରଙ୍ଗକୁ ରୂପାନ୍ତରିତ କରେ । କିନ୍ତୁ ଏହି ତରଙ୍ଗକୁ ବହୁ ଦୂର ବାଟ ଅତିକ୍ରମ କରିବାକୁ ହେଲେ ଏହା କ୍ଷୀଣ ହୋଇଆସେ । ଫଳରେ ଏହା ଅଧିକ ଶକ୍ତିଶାଳୀ ବା ପରିବର୍ଦ୍ଧିତ ନ ହେଲେ କିଛି ଶୁଣିବା ସମ୍ଭବପର ହୁଏନାହିଁ । ତେଣୁ ବହୁଦୂରରୁ ଆସୁଥିବା ସଙ୍କେତକୁ ଗୋଟିଏ ଟ୍ରାଇଓଡ୍‌ର ଗ୍ରିଡ୍ ବା ପୂର୍ବୋକ୍ତ ତାରଜାଲି ସହିତ ସଂଯୁକ୍ତ କରାଯାଏ । ଏହି ଗ୍ରିଡ୍‌ଟି ଯେତେବେଳେ ଯୁକ୍ତାତ୍ମକ ଚାର୍ଜବିଶିଷ୍ଟ ହୁଏ, ସେତେବେଳେ ଏହା ଫିଲାମେଣ୍ଟର ଇଲେକ୍‌ଟ୍ରନକୁ ଆକର୍ଷଣ କରେ । ଆକର୍ଷିତ ହୋଇ ଆସୁଥିବା ଇଲେକ୍‌ଟ୍ରନ୍ ଗୁଡ଼ିକ ଗ୍ରିଡ୍‌ର ଦେଇ ପ୍ଲେଟ୍ ନିକଟକୁ ଚାଲିଯାଆନ୍ତି, କାରଣ ପ୍ଲେଟ୍ ସବୁବେଳେ ଯୁକ୍ତାତ୍ମକ ଚାର୍ଜ ବହନ କରିଥାଏ । ଫଳରେ ବିଦ୍ୟୁତ୍‌ସ୍ରୋତ ପ୍ରବାହର ପରିପଥ ସଂପୂର୍ଣ୍ଣ ହୋଇଯାଏ । କିନ୍ତୁ ଗ୍ରିଡ୍‌ର ଚାର୍ଜ ଯଦି କ୍ଷୀଣ ହୁଏ ତେବେ ଏହା ଫିଲାମେଣ୍ଟରୁ ବହୁତ କମ୍ ସଂଖ୍ୟାର ଇଲେକ୍‌ଟ୍ରନ୍‌କୁ ଆକର୍ଷଣ କରେ । ତେଣୁ ପରିପଥରେ ପ୍ରବାହିତ

ବିଦ୍ୟୁତ୍‌ସ୍ରୋତ ମଧ୍ୟ କ୍ଷୀଣ ହୋଇଯାଏ । ଅନ୍ୟପକ୍ଷରେ ଗ୍ରିଡ୍‌ର ଋଣ ଚିକେ କେଦୀ ହେଲେ ଏହା ବେଶୀ ଶ୍ରେଣୀ ଇଲେକ୍‌ଟ୍ରନ୍ ଟାଣିବାକୁ ସକ୍ଷମ ହୁଏ ଓ ବିଦ୍ୟୁତ୍‌ପ୍ରବାହ ଶକ୍ତିଶାଳୀ ହୁଏ ।

ଆମେତ ଆଗରୁ ଜାଣିଛୁ ଯେ ଆସୁଥିବା ସଙ୍କେତକୁ ଗ୍ରିଡ୍ ସହ ସଂଯୁକ୍ତ କରଯାଇଥାଏ । ଫଳରେ ସଙ୍କେତର ତରଙ୍ଗ ଅନୁସାରେ ଗ୍ରିଡ୍‌ର ଋଣ ଶକ୍ତି ବଦଳେ ଓ ସେହି ଅନୁସାରେ ଡ୍ରାଇଓଡ୍ ଦେଇ ଗତି କରୁଥିବା ବିଦ୍ୟୁତ୍ ମଧ ବଦଳେ । ଅର୍ଥାତ୍ ବିଦ୍ୟୁତ୍‌ସ୍ରୋତର ରୂପରେଖ ଆସୁଥିବା ସଙ୍କେତର ରୂପରେଖର ଅନୁରୂପ । ତଫାତ୍ ଏତିକି ଯେ ଫିଲାମେଣ୍ଟରୁ ଅଧିକ ଇଲେକ୍‌ଟ୍ରନ ଏହି ସ୍ରୋତକୁ ଆସିବା ଫଳରେ ସଙ୍କେତଟି ପରିବର୍ଦ୍ଧିତ ହୋଇଥାଏ, ଫଳରେ ଏହାକୁ ଶୁଣିବା ସହଜ ହୁଏ ।

ବହୁତ ପ୍ରକାରର ଇଲେକ୍‌ଟ୍ରନିକ୍ ଟ୍ୟୁବ୍ ତିଆରି ହୋଇ ବିଭିନ୍ନ ପ୍ରକାର ବ୍ୟବହାରରେ ଲାଗିଛି । କେତେକ ଇଲେକ୍‌ଟ୍ରନିକ୍ ଯନ୍ତ୍ରରେ ଶହ ଶହ ବା ହଜାର ସଂଖ୍ୟାରେ ଟ୍ୟୁବର ବ୍ୟବହାର ହୋଇଛି । କିନ୍ତୁ ଏହି ଟ୍ୟୁବ୍‌ଗୁଡ଼ିକର ଆକାର ବଡ଼ ଥିଲା, ତେଣୁ ସହଜରେ ଭାଙ୍ଗି ଯାଉଥିଲା । ତେଣୁ ବୈଜ୍ଞାନିକମାନେ ଏହାକୁ ଆହୁରି ଛୋଟ ଓ ଅଧିକ ମଜବୁତ୍ କରିବାକୁ ଚେଷ୍ଟା କଲେ ।

ଦ୍ୱିତୀୟ ମହାଯୁଦ୍ଧ ପରେ ଆମେରିକାର ବେଲ୍ ଟେଲିଫୋନ୍ ପରୀକ୍ଷାଗାରରେ ଦଳେ ବୈଜ୍ଞାନିକ ଏହି କଥା ଚିନ୍ତା କରିବାକୁ ଲାଗିଲେ । ଏହି ଦଳରେ ଥିଲେ ଓ୍ୟାଲଟର ବ୍ରାଟେନ୍, ଉଇଲିୟମ୍ ସକ୍‌ଲେ, ଏସ୍. ଓ. ମର୍‌ଗାନ୍, ଜି. ଏଲ୍. ପିଅର୍‌ସନ୍ ଓ ଜନ୍ ବାର୍ଡ଼ିନ୍ । ୧୯୪୭ରେ ସେମାନେ କେତେକ ଅର୍ଦ୍ଧପରିବାହୀ ଧାତୁର ବ୍ୟବହାରକରି ଟ୍ରାନ୍‌ଜିଷ୍ଟର୍ ଉଦ୍ଭାବନ କଲେ ।

ଆମେ ଜାଣିଛେ ବସ୍ତୁଗୁଡ଼ିକୁ ବିଦ୍ୟୁତ୍‌ସ୍ରୋତ ପରିବହନ କ୍ଷମତାନୁସାରେ ଦୁଇ ଭାଗରେ ବିଭକ୍ତ କରଯାଇଥାଏ—ଗୋଟିଏ ସୁପରିବାହୀ ଓ ଅନ୍ୟଟି କୁପରି-ବାହୀ । ସୁପରିବାହୀ ପଦାର୍ଥ ଦେଇ ବିଦ୍ୟୁତ୍‌ସ୍ରୋତ ସହଜରେ ପ୍ରବାହିତ ହୋଇ-ପାରେ । ଏହାର ଉଦାହରଣ ରୁପା ଓ ତମ୍ବା ଇତ୍ୟାଦି । କାଚ ଓ କାଠ ପ୍ରଭୃତି କୁପରିବାହୀ ବସ୍ତୁଗୁଡ଼ିକ ମଧ୍ୟଦେଇ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହୋଇପାରେନାହିଁ । ଏଗୁଡ଼ିକ ବ୍ୟତୀତ ସିଲିକନ୍, ଜର୍ମାନିୟମ୍ ପ୍ରଭୃତି ଆଉ ଏକଜାତୀୟ ପଦାର୍ଥମାନଙ୍କର ଏକ ବିଶେଷ ଗୁଣଅଛି । ସାଧାରଣ ଅବସ୍ଥାରେ ଏଗୁଡ଼ିକ କୁପରିବାହୀ । କିନ୍ତୁ କେତୋଟି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ପରେ ଏକ ନିର୍ଦ୍ଦିଷ୍ଟ ଅବସ୍ଥାରେ ଏଗୁଡ଼ିକର ଗୁଣ ବଦଳିଯାଏ ।

ଉଦାହରଣସ୍ୱରୂପ ଜର୍ମାନିୟମ୍‌କୁ ଯଦି ଖୁବ୍ ଅଳ୍ପ ପରିମାଣର ଆର୍ସେନିକ ସହିତ ମିଶାଯାଏ ତେବେ ଏହା ମଧ୍ୟଦେଇ କେବଳ ଗୋଟିଏ ଦିଗରେ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହୋଇପାରେ । ଏହି ଦିଗଟି ହେଉଛି ବିଯୁକ୍ତାତ୍ମକ ଗ୍ରର୍ଜ ଥିବା ପାଖରୁ ଯୁକ୍ତାତ୍ମକ ଗ୍ରର୍ଜଥିବା ପାଖକୁ । କିନ୍ତୁ ଜର୍ମାନିୟମ୍ ସହିତ ଯଦି ଗାଲିୟମ୍‌କୁ ମିଶାଇ ଦିଆଯାଏ ତେବେ ଉପରୋକ୍ତ ଦିଗର ବିପରୀତ ଦିଗରେ ହିଁ କେବଳ ବିଦ୍ୟୁତ୍‌ସ୍ରୋତ ପ୍ରବାହିତ ହୁଏ । ତେଣୁ ଏଗୁଡ଼ିକ ପୂର୍ବଲିଖିତ ଭାଲ୍‌ଭ ପରି କାମ କରନ୍ତି ।

ଏହି ପ୍ରକାର ବସ୍ତୁ ସାହାଯ୍ୟରେ ବୈଜ୍ଞାନିକମାନେ ରେକ୍‌ଟିଫାୟାର, ଆମ୍ପ୍ଲିଫାୟାର୍ ପ୍ରଭୃତି ଯନ୍ତ୍ରପାତି ତିଆରି କରି ପାରିଛନ୍ତି । ଏଥିପାଇଁ ଆଉ ତାପାୟନିକ ଟ୍ୟୁବ୍‌ର ଆବଶ୍ୟକତା ପଡ଼ୁନାହିଁ ।

ଟ୍ୟୁବ୍ ତୁଳନାରେ ଟ୍ରାନଜିଷ୍ଟର୍ ବ୍ୟବହାରରେ ଅନେକ ସୁବିଧା ରହିଛି । ପ୍ରଥମେ ଏଗୁଡ଼ିକର ଆକାର ଟ୍ୟୁବ୍‌ର ଶତାଧିକ ଭାଗରୁ ବେଶୀ ଛୋଟ । ଏଥିରେ କାଚ ନ ଥିବାରୁ ଭାଙ୍ଗିବାର ସମ୍ଭାବନା ଯଥେଷ୍ଟ କମ୍ । ପୁଣି ତାପାୟନିକ ଟ୍ୟୁବ୍‌କୁ କାମକରିବା ଅବସ୍ଥାକୁ ଆଣିବାପାଇଁ ଉତ୍ତାପ ପ୍ରୟୋଗର ଆବଶ୍ୟକ ପଡ଼େ । ସେଥିପାଇଁ ମଧ୍ୟ ସମୟ ଦରକାର । କିନ୍ତୁ ଟ୍ରାନ୍‌ଜିଷ୍ଟର୍ ବିଦ୍ୟୁତ୍‌ସ୍ରୋତର ପ୍ରବାହ ଆରମ୍ଭ ମାତ୍ରକେ କାମକରେ । ଏଥିପାଇଁ ଉତ୍ତାପର କୌଣସି ଆବ ``ତା ନାହିଁ । ସର୍ବୋପରି ଟ୍ରାନ୍‌ଜିଷ୍ଟର ତିଆରି କରିବା ଏକ ଶସ୍ତା ଓ ସହଜ ବ୍ୟାପାର ।

ପ୍ରକୃତରେ ଇଲେକ୍‌ଟ୍ରନିକ୍‌ସର ବ୍ୟବହାର ଦୁନିଆକୁ ବଦଳାଇ ଦେଇଛି । ଛୋଟ ରେଡ଼ିଓଠାରୁ ଆରମ୍ଭକରି ଅତି ବଡ଼ ଧରଣର ଯନ୍ତ୍ରପାତି, ଯାହାକୁ ନ ଦେଖିଲେ ବିଶ୍ୱାସ କରି ହେବନି, ସବୁ ଟ୍ରାନ୍‌ଜିଷ୍ଟର୍ ସାହାଯ୍ୟରେ ଚାଲୁଛି । ସିଗାରେଟ ଆକୃତିର ଏକ ଇଲେକ୍‌ଟ୍ରନିକ୍ ଯନ୍ତ୍ର ସାହାଯ୍ୟରେ ଗୋଟିଏ ରୋଗୀର ହୃଦୟସ୍ପନ୍ଦନର ସମୟ-ଦୋଷ ଦୂରକରାଯାଇପାରୁଛି । ଯନ୍ତ୍ରଟିର ନାମ ହାର୍ଟପେସ୍‌ମେକର । ପୁଣି କେତେକ ହୃଦୟରୋଗରେ ଆକ୍ରାନ୍ତ ରୋଗୀମାନଙ୍କ ଛାତିରେ ଇଲେକ୍‌ଟ୍ରନିକ୍ ଯନ୍ତ୍ର ଖଞ୍ଜାଯାଇ ସେମାନଙ୍କ ହୃତ୍‌ପିଣ୍ଡକୁ କାର୍ଯ୍ୟକ୍ଷମ ଅବସ୍ଥାରେ ରଖାଯାଉଛି ।

ଆଶ୍ଚର୍ଯ୍ୟ ଲାଗେ, ଲୁଗା ଦେହରେ ଇଲେକ୍‌ଟ୍ରନିକ୍ ଯନ୍ତ୍ର ଖଞ୍ଜାଯାଇ ପାରୁଛି ଯାହା ଫଳରେ ପିନ୍ଧିଲା ଲୋକ ତା'ର ଆବଶ୍ୟକତା ଅନୁଯାୟୀ ସୁଇଚ୍ ଟିପି ଗରମ ବା ଥଣ୍ଡା ଅନୁଭବ କରିପାରିବ ।



ଘରର କାନ୍ଥରେ ଇଲେକଟ୍ରନିକ୍ ଯନ୍ତ୍ରଖଣ୍ଡି କୋଠରୀର ତାପ ନିୟନ୍ତ୍ରଣ କରାଯାଇ ପାରୁଛି । ଏହାର ସାହାଯ୍ୟରେ ଯେକୌଣସି ଭାଗରେ ରାତିଦିନନିର୍ବିଶେଷରେ ଶତ୍ରୁପକ୍ଷର ବିମାନ ଆକ୍ରମଣର ବହୁପୂର୍ବରୁ ସତର୍କତା ଅବଲମ୍ବନ କରାଯାଇପାରୁଛି । ମାଲବାହୀ ଜାହାଜ ଓ ଯୁଦ୍ଧଜାହାଜରେ ଇଲେକ୍ଟ୍ରନିକ ଯନ୍ତ୍ରପାତି ଖଞ୍ଜାଯାଇ ସୁଫଳରେ କାର୍ଯ୍ୟ କରାଯାଉଛି । କାରଣ ଏହି ଯନ୍ତ୍ରଗୁଡ଼ିକ ସାହାଯ୍ୟରେ ଉପକୂଳଠାରୁ ଅନେକ କିଲୋମିଟର ଦୂରରୁ ରେଡ଼ିଓ ସମ୍ବାଦ ସଂଗ୍ରହ, କ୍ଷେପଣାସ୍ତ୍ରପରୀକ୍ଷା ପର୍ଯ୍ୟବେକ୍ଷଣ, ଆକାଶ ଓ ସ୍ଥଳବାହିନୀର ଗତିବିଧି ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କର ନକ୍ସାଙ୍କନ ଇତ୍ୟାଦି କରାଯାଇ ପାରୁଛି । ଇଲେକଟ୍ରନିକ୍ସର ଆଉ ଏକ ଦାନ "ଲେସର" । ଏହା ଏତେ ପ୍ରଖର ଶକ୍ତିବିଶିଷ୍ଟ ରଶ୍ମି ଯେ ଏହା ଅନେକ ମିଟର ଦୂରରେ ଥିବା ଧାତୁଖଣ୍ଡରେ ବି କଣା କରିଦେଇ ପାରିବ । ଚନ୍ଦ୍ରପୃଷ୍ଠକୁ ପଠା-ଯାଇଥିବା ଲେସର୍ ରଶ୍ମି ଚାରି ଲକ୍ଷ କିଲୋମିଟର ଗତି କଲାପରେ ମଧ୍ୟ ତିନି କିଲୋମିଟର ବ୍ୟାସବିଶିଷ୍ଟ ସ୍ଥାନରେ ପରିବ୍ୟାପ୍ତ ହୋଇଥିଲା ।

ଆଧୁନିକ ଇଲେକ୍ଟ୍ରନିକ କମ୍ପ୍ୟୁଟର୍‌ର ନାଁ ଏକାଧିକ । ସେଥିରୁ କେତୋଟି ହେଲା—ଦକ୍ଷହିସାବୀ, କୃତ୍ରିମ ମସ୍ତିଷ୍କ, ବାକ୍ସ ମଧ୍ୟସ୍ଥିତ ମସ୍ତିଷ୍କ ଓ ଗଣକ-ଯନ୍ତ୍ର ଇତ୍ୟାଦି ।

ଏଥିରୁ ଜଣାଯାଏ ଯେ ଏହି ଯନ୍ତ୍ରଗୁଡ଼ିକର ପ୍ରାୟ ମସ୍ତିଷ୍କ ପରି କାମକରିବା ଭଳି କ୍ଷମତା ରହିଛି ।

ଆଧୁନିକ କମ୍ପ୍ୟୁଟର ନିଶ୍ଚିତ ଭାବରେ ଏକ ବିସ୍ମୟକର ଉଦ୍ଭାବନ । ଏହା ମଣିଷଠାରୁ ସହସ୍ରାଧିକ ଗୁଣରେ ଶୀଘ୍ର ହିସାବ କରିପାରେ; କ୍ଳାନ୍ତ ହୁଏନାହିଁ କି



ଭୁଲ୍ କରେନାହିଁ । ଏହା ଅନେକ କଥା ମନେ ରଖିପାରେ ଓ ମାତ୍ର କେତୋଟି ସେକେଣ୍ଡ ମଧ୍ୟରେ ଏକ ସିଦ୍ଧାନ୍ତରେ ପହଞ୍ଚିପାରେ । ଏହି ସିଦ୍ଧାନ୍ତ ଅନୁସାରେ ଏହା କାମକରେ ଓ କୌଣସିଠାରେ ଭୁଲହେଲେ ଏହା ନିଜର ଅନୁଭୂତି ଜରିଆରେ ନିଜର ମୂଳ ସିଦ୍ଧାନ୍ତକୁ ଆବଶ୍ୟକତାନୁଯାୟୀ ପରିବର୍ତ୍ତିତ କରିନିଏ । ଠିକ୍ ଯେପରି ମଣିଷଟିଏ ତ ! ଭୟହୁଏ ଯେ ଦିନେ ହୁଏତ ଜୀବନର ଅନେକ କ୍ଷେତ୍ରରେ ଏହା ମଣିଷ ସ୍ଥାନରେ କାମ କରିବ ଓ ଆଉ କେତେ କ୍ଷେତ୍ରରେ ମଣିଷର ପ୍ରଭୁହୋଇ ରହିବ ।

କମ୍ପ୍ୟୁଟରର କାର୍ଯ୍ୟ କରିବା ଦେଖିଲେ ମଣିଷ ମସ୍ତିଷ୍କର କାମ କରିବା ପଦ୍ଧତି କଥା ମନକୁ ଆସେ । କୌଣସି ପ୍ରଶ୍ନର ସମାଧାନ ପାଇଁ ଆବଶ୍ୟକୀୟ ତଥ୍ୟ ଓ ନିର୍ଦ୍ଦେଶାବଳୀ କମ୍ପ୍ୟୁଟର୍‌କୁ ଯୋଗାଇ ଦିଆଯାଏ । ଏହାକୁ "ପ୍ରୋଗାମ୍" କୁହାଯାଏ । କମ୍ପ୍ୟୁଟର ତଥ୍ୟଗୁଡ଼ିକ ନିଜର ସ୍ମୃତି ଏକକ (Memory unit)ରେ ରଖି ପ୍ରଶ୍ନର ସମାଧାନ ପାଇଁ ଚେଷ୍ଟାକରେ । ସମୟକୁ ସମୟ ଯେଉଁ ତଥ୍ୟ ଦରକାର ପଡ଼େ ତାକୁ ସେ ସ୍ମୃତି ଏକକରୁ ଆଣିଥାଏ । ସମାଧାନ ପରେ କମ୍ପ୍ୟୁଟର ଉତ୍ତରଟି ଜଣାଇଦିଏ । ତେଣୁ "ପ୍ରୋଗାମ୍" ଯଦି ଠିକ୍ ଅଛି ବାକୀସବୁ କମ୍ପ୍ୟୁଟର୍ ଛାଏଁ ଛାଏଁ କରିଥାଏ ।

କମ୍ପ୍ୟୁଟର ଆଜି ମଣିଷର ସମସ୍ତ ପ୍ରକାର କାର୍ଯ୍ୟରେ ବ୍ୟବହୃତ ହେଲଣି । ଶିଳ୍ପକ୍ଷେତ୍ରରେ ସ୍ୱୟଂଚାଳିତ ଯନ୍ତ୍ରର ବ୍ୟବହାର ବୃଦ୍ଧି ପାଇବାରେ ଲାଗିଛି । ଫଳରେ ଗୋଟିଏ ଗୋଟିଏ କାର୍ଯ୍ୟ ମୂଳରୁ ଶେଷ ପର୍ଯ୍ୟନ୍ତ କୌଣସି ଶ୍ରମିକର ବିନା ସାହାଯ୍ୟରେ ସାଧିତ ହୋଇ ପାରୁଛି । କମ୍ପ୍ୟୁଟର ସାହାଯ୍ୟରେ ଚାଳକ ବିନା ଉଡ଼ାଜାହାଜ ଆଟ୍‌ଲାଣ୍ଟିକର ଗୋଟିଏ ପଟରୁ ଅନ୍ୟ ପଟକୁ ଯାଇପାରୁଛି । ମଟରକାର୍‌ଗୁଡ଼ିକୁ ବିନାଡ୍ରାଇଭରରେ ଚଳାଇବାର ଚେଷ୍ଟାରେ ବର୍ତ୍ତମାନ ବୈଜ୍ଞାନିକମାନେ ଲାଗିଛନ୍ତି । ଏହା ସଫଳ ହେଲେ ଆଉ ଦୁର୍ଘଟଣା ହେବନାହିଁ ବୋଲି ଆଶାକରାଯାଏ ।

ଭବିଷ୍ୟତରେ ଯୁଦ୍ଧରେ ସମସ୍ତ କାର୍ଯ୍ୟ କମ୍ପ୍ୟୁଟରଦ୍ୱାରା କରାଯିବ ବୋଲି ଅନୁମାନ କରାଯାଏ । ଏପରିକି ଯୁଦ୍ଧ କୌଶଳ ମଧ୍ୟ କମ୍ପ୍ୟୁଟର ପ୍ରସ୍ତୁତ କରିବ । ଯୁଦ୍ଧରେ ନିୟୋଜିତ ସୈନ୍ୟସାମନ୍ତ, ବିମାନ, ଏ ସବୁର ଅବସ୍ଥିତି, ପରିବହନ ବ୍ୟବସ୍ଥା, ଯୁଦ୍ଧ ସରଞ୍ଜାମ ଇତ୍ୟାଦି ତଥ୍ୟ ଏହାକୁ ଯୋଗାଇଦେଲେ କମ୍ପ୍ୟୁଟର ସର୍ବୋତ୍ତମ କାର୍ଯ୍ୟପନ୍ଥା ନିର୍ଣ୍ଣୟ କରି ଜଣାଇଦେବ । ଟ୍ରାନ୍‌ଜିଷ୍ଟର ବ୍ୟବହାର ଫଳରେ କମ୍ପ୍ୟୁଟର୍ ଏପରି ସୂକ୍ଷ୍ମ ଓ କ୍ଷୁଦ୍ର ହୋଇପାରିଛି ଯେ ଏହାକୁ ସହଜରେ ଟ୍ରକ୍ ବା ହେଲିକେପ୍‌ଟର୍‌ରେ ସ୍ଥାନାନ୍ତରିତ କରିହେବ ।

କମ୍ପ୍ୟୁଟର ସାହାଯ୍ୟରେ ହଜାର ହଜାର ମାଇଲ୍ ଦୂରରେ ଥିବା ନିର୍ଦ୍ଦିଷ୍ଟ ସ୍ଥାନକୁ କ୍ଷେପଣାସ୍ତ୍ର ନିର୍ଭୁଲଭାବରେ ପଠାଯାଇ ପାରିବ । ଆହୁରି ଆଶ୍ଚର୍ଯ୍ୟ କଥା ଯେ ଶତ୍ରୁପକ୍ଷର କ୍ଷେପଣାସ୍ତ୍ର ଆସୁଥିବା ସମୟରେ ଲକ୍ଷ୍ୟ କରାଯାଇ ତାହା ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ ତାକୁ ନଷ୍ଟ କରାଯାଇ ପାରିବ । କ୍ଷେପଣାସ୍ତ୍ର ଗୁଡ଼ିକ ଶବ୍ଦଠୁ ଅନେକ ଗୁଣ ବେଗରେ ଗତି କରିଥାନ୍ତି । ତଥାପି କମ୍ପ୍ୟୁଟର ଯେ କେବଳ ଏହାର ଦୂରତା ମାପି ପାରେ ତାହା ନୁହେଁ, ଆଉ ଏକ କ୍ଷେପଣାସ୍ତ୍ର ପଠାଇ ଆସୁଥିବା କ୍ଷେପଣାସ୍ତ୍ରକୁ ମଝିବାଟରେ ବିସ୍ଫୋରଣ ଘଟାଇ ନଷ୍ଟ କରିଦେଇ ପାରେ ।

୧୯୬୯ ମସିହାରେ ଆପୋଲୋ–୧୧ ଓ ଆପୋଲୋ–୧୨ ରେ ଆମେରିକୀୟ ମହାକାଶଚାରୀମାନଙ୍କର ଚନ୍ଦ୍ରଯାତ୍ରା ମାନବ ଇତିହାସରେ ସର୍ବଶ୍ରେଷ୍ଠ ଅଭିଯାନ । ଇଲେକ୍‌ଟ୍ରନିକ୍‌ସର ବିନା ସାହାଯ୍ୟରେ ଏହା ଆଦୌ ସମ୍ଭବ ହୋଇନଥାନ୍ତା । ଏହି ଅଭିଯାନର ପ୍ରତ୍ୟେକ ଟିକିନିଖି ଯୋଜନା କମ୍ପ୍ୟୁଟରଦ୍ୱାରା ହିଁ ପ୍ରସ୍ତୁତ ହୋଇଥିଲା । ଯାତ୍ରାର ସବୁସମୟରେ ମହାକାଶଯାନ ସହିତ ଇଲେକ୍‌ଟ୍ରନିକ୍‌ଯନ୍ତ୍ର ସାହାଯ୍ୟରେ ଯୋଗାଯୋଗ ରଖାଯାଇଥିଲା । କମ୍ପ୍ୟୁଟର ଏହି ଯାନଗୁଡ଼ିକର ଗତିର ବେଗ ଓ ଦିଗ ନିୟନ୍ତ୍ରଣ କରୁଥିଲା । ଏପରିକି ଚନ୍ଦ୍ରପୃଷ୍ଠରେ ଅବତରଣକୁ ମଧ୍ୟ କୌଣସି ବିପଦର ଆଶଙ୍କା ଦେଖା ଦେଇଥିଲେ କମ୍ପ୍ୟୁଟରଦ୍ୱାରା ମହାକାଶ ଯାନଗୁଡ଼ିକୁ ନିରାପଦରେ ପୃଥିବୀପୃଷ୍ଠକୁ ଫେରାଇ ଅଣାଯାଇ ପାରିଥାନ୍ତା । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସବୁ ଇଲେକ୍‌ଟ୍ରନିକ୍‌ସର ଖେଳ ।



ଫିକ୍ଚରେ କମ୍ପ୍ୟୁଟର କରି ନ ପାରିଲା ଭଳି କାମ ବୋଧେ କିଛି ନାହିଁ ।
କମ୍ପ୍ୟୁଟରକୁ ଏପରି ଶିକ୍ଷା ଦିଆଯାଇ ପାରୁଛି ଯେ ଏହା ଗୋଟିଏ ବହିକୁ ଅନ୍ୟ ଭାଷାରେ



ଅନୁବାଦ କରିପାରୁଛି । କମ୍ପ୍ୟୁଟର୍ ଚେସ୍ ବି ଖେଳିପାରୁଛି । ଏ କଥାସବୁ ବିଶ୍ୱାସ ହୋଇନପାରେ କିନ୍ତୁ ସତ ।

ଇଲେକ୍ଟ୍ରନିକ୍ସ ପଦାର୍ଥ ବିଜ୍ଞାନର ଏକ ବର୍ଦ୍ଧନଶୀଳ ବିଭାଗ । ଏହା ଏକ ବିରାଟ ଆକାର ନେଇଣି ତଥାପି ଏହାର ବିକାଶ ଅବ୍ୟାହତ ରହିଛି ।

ଏହି ପୁସ୍ତକମାଳାରେ ଅନ୍ୟାନ୍ୟ ପୁସ୍ତକ—

| | | |
|---|---|---|
| ବାପୁ | .. | ଲେଖା ଓ ଚିତ୍ର: |
| (ଦୁଇଟି ଭାଗରେ ମହାତ୍ମା ଗାନ୍ଧିଙ୍କର ସଚିତ୍ର ଜୀବନୀ) | | ଏଫ. ସି. ଫ୍ରିଟାସ୍ |
| କାଶ୍ମୀର | | ଆଲେକ ଚିତ୍ର: ପି.ଏନ୍. ଶର୍ମା |
| | | ଲେଖା: ମାଲ ସିଂ |
| ପକ୍ଷୀ ଜଗତ | | ଜମାଲ୍ ଆରା |
| ଆମ ନଦୀମାନଙ୍କର କାହାଣୀ | | ଲୀଳା ମଜୁମ୍‌ଦାର |
| ଶୃଙ୍ଗରୁ ଶୃଙ୍ଗ | | ବ୍ରିଗେଡ଼ିଆର ଜ୍ଞାନ ସିଂ |
| ଆଲୋକ ଓ ଆନନ୍ଦର କାହାଣୀ | | ମନୋଜ ଦାସ |
| ସ୍ୱର୍ଗଗମନ ଓ ଅନ୍ୟାନ୍ୟ କାହାଣୀ | | ଲୀଳାବତୀ ଭଗତ୍ |
| ସେମାନେ ଦେଖିଥିବା ଭାରତ | | କେ. ସି. ଖାନ୍ନା |
| ଆମ ରେଲପଥ | | ଜଗଜିତ୍ ସିଂ |
| ଗଳ୍ପ, ନାଟକ କରିବା | | ଉମା ଆନନ୍ଦ |
| ଆମ ସ୍ୱରାଜ୍ୟ କାହାଣୀ | | ବିଷ୍ଣୁ ପ୍ରଭାକର |
| ବିଲେଇ ନାନୀର ପରିବାର | | ଏମ୍. ଡି. ଚତୁର୍ବେଦୀ |
| ବହୁତ ଦିନ ତଳେ | | ଏମ୍. ଶ୍ରେକ୍‌ସି ଓ |
| | | ପି. ଏମ୍. ଯୋଷୀ |
| ଯୁଗ ଯୁଗର କାହାଣୀ | | ଶାନ୍ତା ରଙ୍ଗାଚାରୀ |
| ଗେହନ୍ତା ଓ ନାହ୍ରିୟ | | କୃଷ୍ଣ ଚୈତନ୍ୟ |
| ବରପାନି | | ଲୀଳା ମଜୁମ୍‌ଦାର |
| ସାହସିକତାର କାହାଣୀ | | ଗଜେନ୍ଦ୍ର ଅବସ୍ଥୀ |

ପ୍ରତ୍ୟେକ ବହିର ମୂଲ୍ୟ Rs. 2·50

ଏହି ପୁସ୍ତକଗୁଡ଼ିକ ସମସ୍ତ ଭାରତୀୟ ଭାଷା ଓ ଇଂରାଜିରେ ମିଳୁଅଛି ।

